

# ମିହିର ରାଓ

କଟକ ସହରର ଏକ ପ୍ରତିଷ୍ଠିତ ବ୍ରାହ୍ମ ପରିବାରରେ ସ୍ୱର୍ଗତ ସୁଧାକର ରାଓ ଓ ସ୍ୱର୍ଗତା ସୁଷମା ରାଓଙ୍କ ଔରସରୁ ୧୬ ମାର୍ଚ୍ଚ, ୧୯୨୨ରେ ଜନ୍ମିତ ମିହିର ରାଓଙ୍କର ୧୩ ଜାନୁଆରୀ, ୧୯୯୮ ମସିହାରେ ପରଲୋକ ଘଟିଥିଲା। ସେ ଟାଉନ୍ ଭିକ୍ଟୋରିଆ ବିଦ୍ୟାଳୟ (ଆଧୁନା ଭକ୍ତମଧୁ ବିଦ୍ୟାପୀଠ)ରୁ ମାଟ୍ରିକ୍, ରେଭେନ୍ସା ମହାବିଦ୍ୟାଳୟରୁ ବିଜ୍ଞାନରେ ସ୍ନାତକ ଓ ୧୯୪୭ ମସିହାରେ କୋଲକତା ବିଶ୍ୱବିଦ୍ୟାଳୟରୁ ପ୍ରାୟୋଗିକ ଗଣିତ ଶାସ୍ତ୍ରରେ ସ୍ନାତକୋତ୍ତର ଉପାଧି ହାସଲ କରିବା ପରେ ସାମ୍ବାଦିକତାକୁ ଆଦରି ନେବା ସହ "ପ୍ରଜାତନ୍ତ୍ର" ଓ ଇଷ୍ଟର୍ଣ୍ଣ ଟାଇମସ୍ ସମ୍ବାଦପତ୍ରରେ ସହସମ୍ପାଦକ ଭାବରେ ଅନେକ ବର୍ଷ କାର୍ଯ୍ୟ କରିଥିଲେ। ସର୍ବ ଭାରତୀୟ ସୂଚନାସେବାର ସଦସ୍ୟ ଭାବରେ କଟକ ପ୍ରେସ୍ ଇନ୍‌ଫର୍ମେସନ୍ ବ୍ୟୁରୋର ଅଫିସର ଓ ଭୁବନେଶ୍ୱରସ୍ଥିତ କେନ୍ଦ୍ରୀୟ କ୍ଷେତ୍ର ପ୍ରଚାର ନିର୍ଦ୍ଦେଶାଳୟର ନିର୍ଦ୍ଦେଶକ ଏବଂ ଅବସର ପରେ ରାଜ୍ୟ ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିଥିଲେ। ସେ ଥିଲେ ଜଣେ କ୍ରୀଡ଼ାବିତ୍, କ୍ରୀଡ଼ା ସଂଗଠକ, ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର ଆଜୀବନ ସଦସ୍ୟ ଏବଂ ସର୍ବୋପରି ଉତ୍କଳ ବ୍ରାହ୍ମ ସମାଜ, କଟକର ଉପସଭାପତି ଓ ସଭାପତି ଭାବରେ ଦକ୍ଷତାର ସହ କାର୍ଯ୍ୟ ସମ୍ପାଦନ କରିଥିଲେ। ■



# ଚନ୍ଦନ ହଜୁରୀ

ମିହିର ରାଓ



କେ-୮/୧୨୧୮ (ଏ), କଳିଙ୍ଗ ନଗର, ଘାଟିକିଆ, ଭୁବନେଶ୍ୱର

# ଚନ୍ଦନ ହଜୁରୀ

ଲେଖକ :
ମିହିର ରାଓ
ପ୍ରକାଶକ :
ବନ୍ଧୁଘର ସାହିତ୍ୟ ପିଣ୍ଡ
କେ-୮/୧୨୧୮ (ଏ), କଳିଙ୍ଗ ନଗର
ଘାଟିକିଆ, ଭୁବନେଶ୍ୱର, ଓଡ଼ିଶା-୭୫୧୦୦୩

ପଞ୍ଚମ ସଂସ୍କରଣ :
ଡିସେମ୍ବର ୨୦୧୭
ପ୍ରଚ୍ଛଦ :
ବିଭୂତିଭୂଷଣ ପରିଜା
ନିରଞ୍ଜନ ମହାରଣା
ଅକ୍ଷରସଜ୍ଜା :
ସରୋଜ କୁମାର ଜେନା
୯୮୬୧୭୬୭୬୯୬
ମୁଦ୍ରଣ :
ଅସୀମା ପ୍ରିଣ୍ଟର୍ସ
ନୂଆପଲ୍ଲୀ, ଭୁବନେଶ୍ୱର

(ଏ ବହିର ସମସ୍ତ ମୁଦ୍ରଣ ଖର୍ଚ୍ଚ ମିହିର ରାଓଙ୍କ ପରିବାର ବହନ କରିଛନ୍ତି ଏବଂ ଏହା ବିଦ୍ୟାଳୟ ପାଠାଗାରଗୁଡ଼ିକୁ ବିନା ମୂଲ୍ୟରେ ବିତରଣ ପାଇଁ ଉଦ୍ଦିଷ୍ଟ ।)

# CHANDAN HAJUREE

AUTHOR :
Mihir Rao
PUBLISHED BY
BANDHUGHARA SAHITYA PINDA
K-8/1218(A), Kalinga Nagar Ghatikia,
Bhubaneswar Odisha-751003

FIFTH EDITION
December 2017

COVER DESIGN
Bibhuti Bhusana Parija
Niranjan Moharana
TYPE SETTING
SAROJ KUMAR JENA
9861767696
PRINTERS AT :
Asima Printers
Nayapalli, Bhubaneswar

(This Publication is fully financed by the family members of Mihir Rao & it is for free distribution to School Libraries of Odisha.)

## ପଞ୍ଚମ ସଂସ୍କରଣ ସମ୍ବନ୍ଧରେ....

ଆମ ଓଡ଼ିଆରେ ଏକ ଲୋକୋକ୍ତି ଅଛି- " *ନଈରେ ବାଜିଆ ଚହଟିଲା, ସିନ୍ଦୂର କଜ୍ଜଳ ନଥାଲୋ ରାଣ୍ଡ, ପୁଉଣି ଚାଖିଆ ନେଉଟିଲା।"* - ଏକଥା କହୁଥିବା ଲୋକ ବି ବହୁ କ୍ଷେତ୍ରରେ ଜାଣନ୍ତି ନାହିଁ ଏ 'ଚାଖିଆ' କିଏ ? କେଉଁଠୁ ସେ ପୁଉଣି ନେଉଟିଲା ? - ଏଇ କଥା ପଦକ ପଛରେ ଲୁଚି ରହିଛି ଭାରତ ସ୍ୱାଧୀନତା ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ପ୍ରବାହ ଏବଂ ତା' ସହିତ ଯୋଡ଼ି ହୋଇ ରହିଛି ଜଣେ ଓଡ଼ିଆ ପୁଅର ବୀରତ୍ୱର କାହାଣୀ।

ଏ 'ଚାଖିଆ' ହେଉଛନ୍ତି ପୁରୀର ଚାଖି ଖୁଣ୍ଟିଆ, ପ୍ରଭୁ ଜଗନ୍ନାଥଙ୍କ ସେବକ, 'ସିପାହୀ ପଣ୍ଡା' ଚନ୍ଦନ ହଜୁରୀ। ପଣ୍ଡାଗିରି ତାଙ୍କର କୌଳିକ ବ୍ୟବସାୟ ଥିଲା ଓ ସେ ବିଭିନ୍ନ ସିପାହୀ ଛାଉଣୀକୁ ଯାଇ ସେଠାରୁ ସିପାହୀମାନଙ୍କୁ ଜଗନ୍ନାଥ ଦର୍ଶନକୁ ଆଣୁଥିଲେ। ସେହି ସୂତ୍ରରେ ସିପାହୀମାନଙ୍କ ସହ ତାଙ୍କର ପରିଚୟ ଓ ଘନିଷ୍ଠତା ଥିଲା ଓ ତାଙ୍କୁ 'ସିପାହୀ ପଣ୍ଡା' କୁହାଯାଉଥିଲା। ଇଂରେଜ ସରକାର ପ୍ରଜାସ୍ୱତ୍ୱ ଆଇନ୍ ବଳରେ ଯେତେବେଳେ ରାଜ୍ୟ ଶାସନ ରାଜାମାନଙ୍କ ହାତରୁ ଛଡ଼ାଇନେଲେ, ସେତେବେଳେ ଇଂରେଜ ଶାସନ ବିରୋଧରେ ବିଦ୍ରୋହର ନିଆଁ ଜୁହୁଳି ଉଠିଲା। ଏଇ ବିଦ୍ରୋହରେ ଝାନ୍ସୀର ରାଣୀ ଲକ୍ଷ୍ମୀବାଈଙ୍କୁ ସକଳ ସାହସ ଓ ସହାୟତା ଯୋଗାଇ ଦେଉଥିଲେ ପୁରୀର 'ସିପାହୀ ପଣ୍ଡା' ଚନ୍ଦନ ହଜୁରୀ ଓରଫ ଚାଖି ଖୁଣ୍ଟିଆ।

ସିପାହୀମାନଙ୍କୁ ଜଗନ୍ନାଥଙ୍କ ଧଣ୍ଡାତୁଳସୀ ଦେବା ଆଳରେ ସେ ବିଦ୍ରୋହର ବୀଜ ବୁଣି ଚାଲିଥିଲେ ସିପାହୀ ଶିବିରରେ, ଯାହା ବିସ୍ଫୋରଣର ରୂପ ନେଇଥିଲା- ୧୮୫୭ର ସିପାହୀ ବିଦ୍ରୋହ ଭାବରେ। ଅପୂର୍ବ ସାହସିକତା ଦେଖାଇ ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ପ୍ରାଣବଳି ଦେଇଥିଲେ ଏବଂ ଇଂରେଜ ସୈନ୍ୟଙ୍କ ଆଖିରେ ଧୂଳିଦେଇ ଚନ୍ଦନ ହଜୁରୀ ଆତ୍ମଗୋପନ କରିଥିଲେ। କିନ୍ତୁ ପୁରୀରେ ପ୍ରଚାର ହୋଇ ଯାଇଥିଲା ଚାଖିଆ ଆଉ ଜୀବନରେ ନାହିଁ; ସିପାହୀ ବିଦ୍ରୋହରେ ସେ ମରିଯାଇଛି। ସେଥିପାଇଁ ଚାଖି ଖୁଣ୍ଟିଆଙ୍କ ପତ୍ନୀଙ୍କ ହାତର ଶଙ୍ଖା ଭାଙ୍ଗି ଦିଆଗଲା,

ମଥାର ସିନ୍ଦୂର ପୋଛି ଦେଇ ତାଙ୍କୁ ବିଧବା ସଜାଇ ଦିଆଗଲା । କିନ୍ତୁ ୧୮୬୫ରେ ଯେତେବେଳେ ଚାଖି ଖୁଣ୍ଟିଆଙ୍କୁ ମନ୍ଦିର ଭିତରେ ତାଙ୍କ ଭଉଣୀ ପାରି ଚିହ୍ନି ପାରିଲା, ସେ ଖୁସିରେ ଆତ୍ମହରା ହୋଇଯାଇ ନିଜ ଭାଉଜଙ୍କୁ କହିଲା- 'ନଈରେ ବାଲିଆ ଚହଟିଲା ସିନ୍ଦୂର କଜ୍ଜଳ ନାଆଲୋ ରାଣ୍ଡ ପୁଣି ଚାଖିଆ ନେଉଟିଲା ।'

ଏଇ ଲୋକ କଥାର ଆଧାରରେ ଐତିହାସିକ ପୃଷ୍ଠପଟରେ ମୋ ବଡ଼ଭାଇ ମିହିର ରାଓଙ୍କ ଦ୍ୱାରା ଲିଖିତ ଏ ବହି 'ଚନ୍ଦନ ହଜୁରୀ'ର ୧୯୫୨-୧୯୭୧ ଭିତରେ ଚାରୋଟି ସଂସ୍କରଣ କଟକର ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା କଟକ ଷ୍ଟୁଡ଼େଣ୍ଟ ଷ୍ଟୋରଦ୍ୱାରା ପ୍ରକାଶିତ ହୋଇଥିଲା ।

ମୋର ଅଧ୍ୟାପକ ଜୀବନ ଭିତରେ ମୁଁ ଯେଉଁ କଲେଜକୁ ଯାଇଛି, ମୋର ସହକର୍ମୀ ଓ ଛାତ୍ରଛାତ୍ରୀମାନେ ମୋତେ ଏ ବହି ମାଗିଛନ୍ତି, କିନ୍ତୁ ମୁଁ ସେମାନଙ୍କ ଅନୁରୋଧ ରକ୍ଷା କରିପାରି ନାହିଁ । ମୋର ଭାଇ ମିହିର ରାଓଙ୍କ ଦେହାନ୍ତ ହେଲା ୧୯୯୮ରେ, ଭାଉଜ ଅନୁପମା ରାଓ ବି ୨୦୧୫ରେ ଇହଧାମ ତ୍ୟାଗ କଲେ । ଫୁଲବାଣୀ ଗଭର୍ମେଣ୍ଟ କଲେଜର ପୂର୍ବତନ ଅଧ୍ୟକ୍ଷ ତଥା ମୋର ବନ୍ଧୁ ଡକ୍ଟର ଜୀବନାନନ୍ଦ କର ଏ ବହିର ପୁନଃ ପ୍ରକାଶ ପାଇଁ ମୋତେ ବାରମ୍ବାର ଅନୁରୋଧ କରିଛନ୍ତି । ସେଇ ସବୁ ଅନୁପ୍ରେରଣାକୁ ଆଧାରକରି ଆଜି ପ୍ରକାଶ ପାଉଛି 'ଚନ୍ଦନ ହଜୁରୀ'ର ପଞ୍ଚମ ସଂସ୍କରଣ । ଚାରିଚାରିଟି ସଂସ୍କରଣ ପ୍ରକାଶ କରିଥିବା କଟକ ଷ୍ଟୁଡେଣ୍ଟ ଷ୍ଟୋର ପ୍ରକାଶନ ସଂସ୍ଥା ପାଖରେ ମୁଁ ଓ ଆମ ପରିବାର କୃତଜ୍ଞ ନିଶ୍ଚୟ । ଓଡ଼ିଶାର ମହାନ୍ ସ୍ୱାଧୀନତା ସଂଗ୍ରାମୀ ଚନ୍ଦନ ହଜୁରୀଙ୍କ ବିଷୟରେ ଆମ ଉତ୍ତର ପିଢିକୁ ଉଦ୍‌ବୁଦ୍ଧ କରିବା ସହିତ ମୋ' ବଡ଼ ଭାଇ ଲେଖକ ମିହିର ରାଓଙ୍କ ସ୍ମୃତି ପଖାଳିବାକୁ ଏ ବହିର ପୁନଃ ମୁଦ୍ରଣ କରାଯାଉଛି ଓ ଏଇ ସଂସ୍କରଣ ବିଦ୍ୟାଳୟମାନଙ୍କ ପାଠାଗାର ପାଇଁ ମାଗଣାରେ ଯୋଗାଇ ଦିଆଯିବା ପାଇଁ ଉଦ୍ଦିଷ୍ଟ ।

କାଳୀଗଳି, କଟକ

୦୨.୧୨.୨୦୧୭

# ପଦେ ଅଧେ

ନବ ଭାରତର ପ୍ରଥମ ଗଣଅଭ୍ୟୁଦୟ "ସିପାହୀ-ବିଦ୍ରୋହ" ବିଷୟରେ ଅନେକ ପୁସ୍ତକ ଭାରତର ବିଭିନ୍ନ ଅଞ୍ଚଳରେ ଲେଖା ହୋଇ ସାରିଲାଣି; କିନ୍ତୁ ସେଗୁଡ଼ିକରେ ଅଗ୍ନିଯୁଗର ଯେଉଁ ଚିତ୍ର ଫୁଟିଛି, ତାହାକୁ କୌଣସିମତେ ନିର୍ଭୁଲ ବା ସମ୍ପୂର୍ଣ୍ଣ ବୋଲି କୁହାଯାଇ ନ ପାରେ। ଉକ୍ତ ଯୁଗର ଅନ୍ୟତମ ଶ୍ରେଷ୍ଠ ପୁରୁଷ ଚନ୍ଦନ ହଜୁରୀ ଇତିହାସର କେଉଁ ଅତଳଗର୍ଭରେ ଲୁଚି ଯାଇଛନ୍ତି, ଭାରତ ତ ଦୂରର କଥା ନିଜ ପ୍ରଦେଶ ଓଡ଼ିଶା ମଧ୍ୟ ତାଙ୍କର ସଠିକ କାର୍ଯ୍ୟକଳାପ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ।

ଏହି କ୍ଷୁଦ୍ର ପୁସ୍ତକଟି ବିଷୟରେ କିଛି କହିବା ପୂର୍ବରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ଗବେଷକ ଶ୍ରୀ ସଦାଶିବ ରଥଶର୍ମାଙ୍କୁ ମୁଁ ମୋର ଅନ୍ତରର କୃତଜ୍ଞତା ଜଣାଉଛି। ପଣ୍ଡିତ ମହାଶୟଙ୍କର ୨ଟି ପ୍ରବନ୍ଧ ('ଚାଖି ଖୁଣ୍ଟିଆ' ଝଙ୍କାର ପ୍ରଥମ ବର୍ଷ ୮ମ ଓ ୧୨ଶ ସଂଖ୍ୟା) ମୋତେ ପ୍ରଥମେ ଚନନ୍ଦ ହଜୁରୀଙ୍କ ବିଷୟରେ କୌତୂହଳୀ କରିଥିଲା। ଉତ୍କଳରେ ଏହି ବୀର ସନ୍ତାନଙ୍କର ପ୍ରକୃତ ପରିଚୟ ପାଇବା ଲାଗି ଇତି ମଧ୍ୟରେ ବିକ୍ଷିପ୍ତଭାବରେ ମୁଁ ଅନେକ ବହିପତ୍ର ଓଲଟାଇଛି; କିନ୍ତୁ ଦୁଃଖର ସହିତ କହିବାକୁ ପଡୁଛି ଯେ, ଚନ୍ଦନ ହଜୁରୀଙ୍କ ସମ୍ପୂର୍ଣ୍ଣ ଇତିହାସ ବର୍ତ୍ତମାନ ସୁଦ୍ଧା ମୋ ନିକଟରେ ଅଜଣା ରହିଛି। ଯେତିକି ତଥ୍ୟ ସଂଗୃହୀତ ହୋଇଛି ସେଥିରୁ ଏତିକି ଜଣାଗଲାଣି ଯେ, "ଚନ୍ଦନ ହଜୁରୀ"ଙ୍କର ଐତିହାସିକ ସତ୍ତା ମହାନ୍।

ଓଡ଼ିଶାବାସୀଙ୍କ ଦୃଷ୍ଟି ଏ ଦିଗକୁ ଆକର୍ଷଣ କରିବା ମୋର ଏହି ବହିଟିର ଏକମାତ୍ର ଲକ୍ଷ୍ୟ। ସାମ୍ବାଦିକ ହିସାବରେ ଦେଶବାସୀଙ୍କ ସମ୍ମୁଖରେ ଏହି ଲେଖାଟି ଉପସ୍ଥାପିତ କରିବା ମୋର ଏକ କର୍ତ୍ତବ୍ୟ ବୋଲି ମନେକରି ମୁଁ ଏ ଦିଗରେ ଅଗ୍ରସର ହୋଇଛି।

ବହିଟି କେବଳ ଇତିହାସ କିମ୍ବା ନିଛକ ଗଳ୍ପ ନୁହେଁ, ଐତିହାସିକ ତଥ୍ୟ ପ୍ରତି ଦୃଷ୍ଟିରଖି କଳ୍ପନାକୁ ଜାଲ ବୁଣିବାର ମୁଁ ସୁବିଧା ଦେଇଛି।

ପରିଶେଷରେ ଯେଉଁ କେତେଜଣ ବନ୍ଧୁଙ୍କର ଉତ୍ସାହ ମୋତେ ଏହି ବହିଟି ଲେଖିବାକୁ ସାହାଯ୍ୟ କରିଛି, ସେମାନଙ୍କ ବିଷୟରେ ପଦେ ଅଧେ କହିବା ମୁଁ ସମୀଚୀନ ମନେକରେ। ଏହି ଲେଖାଟିର ମୂଳ ହେଲା ମୋର ବନ୍ଧୁ ଶ୍ରୀ ରାମପ୍ରସାଦ ମହାନ୍ତିଙ୍କର ବାରମ୍ବାର ଅନୁରୋଧ। ବାରମ୍ବାର ଅନୁରୋଧ ଯୋଗୁଁ ମୀନାବଜାର ପୂଜା ସଂଖ୍ୟାରେ ଏହି ଲେଖାଟି ସଂକ୍ଷିପ୍ତାକାରରେ "ଇତିହାସରୁ ଅଧ୍ୟାୟେ" ନାମରେ ପ୍ରଥମେ ପ୍ରକାଶ ପାଇଥିଲା। ମୋର ସହକର୍ମୀ ଓ ସୁହୃଦ୍ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉକ୍ତ ଲେଖାଟିକୁ ପୁସ୍ତକାକାରରେ ପ୍ରକାଶ କରିବା ଲାଗି ସନିର୍ବନ୍ଧ ଅନୁରୋଧ ଓ ମୂଲ୍ୟବାନ୍ ପରାମର୍ଶ ଦେଇଛନ୍ତି। ବନ୍ଧୁଦ୍ୱୟଙ୍କୁ ଏଥିଲାଗି ଆନ୍ତରିକ ଧନ୍ୟବାଦ ଜଣାଉଛି।

ପଣା ସଂକ୍ରାନ୍ତି
ସାଲ ୧୯୫୨

ମିହର କୁମାର ରାଓ

# ଚନ୍ଦନ ହଜୁରୀ

୧୮୨୭ ସାଲ । ସେତେବେଳକୁ ଓଡ଼ିଶାରୁ ମରହଟ୍ଟାଶାସନ ପ୍ରାୟ ଲୋପ ପାଇ ଆସିଲାଣି । ବିଭିନ୍ନ ଅଞ୍ଚଳର ଶାସନକର୍ତ୍ତାମାନେ ସୁବିଧା ଦେଖି ନିଜ ନିଜକୁ ରାଜା ବୋଲେଇଲେଣି । ପୁରୀର ଗଜପତି କେବଳ ନାଁକୁ ଓଡ଼ିଶାର ରାଜା ଥାଆନ୍ତି । ଠିକ୍ ସେହି ବର୍ଷ କାର୍ତ୍ତିକମାସ ଏକାଦଶୀ ଦିନ ପୁରୀ ହରଚଣ୍ଡୀ ସାହିର ବୁଢ଼ା ଭୀମସେନ ହଜୁରୀଙ୍କ ଘରେ ଜନ୍ମହେଲା ପୁଅଟିଏ । ଜନ୍ମବେଳକୁ ବୁଢ଼ା ଭୀମସେନ ଜଗନ୍ନାଥ ମହାପ୍ରଭୁଙ୍କର ଚନ୍ଦନ ସେବାରେ ବ୍ୟସ୍ତ । ଖବର ପାଇବା ମାତ୍ରେ ଭୀମସେନ ଚନ୍ଦନ ବୋଳା ନୀଳାଦ୍ରିନାଥଙ୍କୁ ଚାହିଁ କହିଲେ, "ମୋର ଚନ୍ଦନ ଆପଣଙ୍କୁ ଲାଗିଲା ।" ସେହିଦିନୁଁ ପୁଅର ଭଲ ନାଁ ହେଲା ଚନ୍ଦନ, ଡାକ ନାଁ ହେଲା ଚାଖି, ଆଉ ସେଇ ଚାଖି ଦିନେ ଚାଖି ଖୁଣ୍ଟିଆ ନାଁରେ ଖ୍ୟାତ ହେଲା ।

ପିଲାଦିନେ ଚାଖି ଥିଲା ଭାରି ଦୁରନ୍ତ । ନିଜ ବୁଦ୍ଧିକୁ ସେ ସମସ୍ତଙ୍କଠାରୁ ସରସ ମନେ କରୁଥିଲା । ନିଜର ବଡୁଘର (ବ୍ରତୋପନୟନ) ଦିନ ଚନ୍ଦନ ବଡ଼ଦେଉଳର ବିଜୟଦ୍ୱାର ନିକଟରେ ଛିଡ଼ାହୋଇ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଛି, ଏତିକିବେଳେ ଗୋଟିଏ ଶକତ୍ ଗୋଛିକାର ସେବାୟତ ଆସି ପହଞ୍ଚିଲା ଚନ୍ଦନ ସାମନାରେ । ସାନ ପିଲାଟି ହାତରେ ନଡ଼ିଆ ଧରି ଛିଡ଼ା ହୋଇଛି । ଗୋଛିକାରର ନଡ଼ିଆଟିକୁ ଦେଖି ହେଲା ଲୋଭ । ସାନ

ପିଲା ଦେଖି ଯେମିତି ସେ ଚନ୍ଦନ ହାତରୁ ନଡ଼ିଆଟି ଛଡ଼ାଇ ନେବାକୁ ଚେଷ୍ଟା କରିଛି, ଚନ୍ଦନ ଆଗପଛ ନ ବିଚାରି ନଡ଼ିଆକୁ ପିଟିଦେଲା ଗୋଛିକାର ମୁଣ୍ଡରେ । ମାଡ଼ଟି ହେଲା ଜବର । ଗୋଛିକାର ବିଚରା ମୁଣ୍ଡକୁ ଧରି ମାଟିରେ ବସି ପଡ଼ିଲା । ଅବସ୍ଥା ଗଣ୍ଡଗୋଳିଆ ହେବାର ଦେଖି ଗୋଛିକାର ବିଚରା ସେଠାରୁ ପଳାଇବାକୁ ବାଟ ପାଇଲା ନାହିଁ ।

- ଏହା ଚାଖିର ପିଲାଦିନର ଗୋଟିଏ ଘଟଣା ।

ବାପାଙ୍କର ଭାରି ଇଚ୍ଛା, ପୁଅ ସଂସ୍କୃତ ପଢ଼ି ଗୋଟାଏ ବଡ଼ ପଣ୍ଡିତ ହେଉ; କିନ୍ତୁ ଯେ ହେବ ବିପ୍ଳବୀ, ତା'ର ପଣ୍ଡିତପଣିଆରୁ ମିଳିବ କ'ଣ ? ବୁଢ଼ା ଭୀମସେନ ପୁଅକୁ ପଠାଇଲେ ପୁରୀର ସେତେବେଳର ଜଣେ ବଡ଼ ପଣ୍ଡିତ ହରିହର ବ୍ରହ୍ମାଙ୍କ ନିକଟକୁ ସଂସ୍କୃତ ଶିଖିବାକୁ; କିନ୍ତୁ ଅଳ୍ପଦିନ ପରେ ଚାଖି ଦିନେ ଆସି ବାପାଙ୍କୁ କହିଲା- "ବାପା, କିଟିମିଟିଆ ସଂସ୍କୃତ ବ୍ୟାକରଣ ଛଡ଼ା ଆଉ ଯାହା ପଢ଼ିବାକୁ କହିବ, ତାହା ପଢ଼ିବାକୁ ମୁଁ ରାଜି । ସଂସ୍କୃତ ବ୍ୟାକରଣ ମୋ ପକ୍ଷରେ ଆୟତ୍ତ କରିବା ଅସମ୍ଭବ ।"

ପୁଅର ସଂସ୍କୃତ ପଢ଼ିବାକୁ ଅନିଚ୍ଛା ଦେଖି ହକୁରୀ ମହାଶୟ ଚନ୍ଦନକୁ ଆଉ ଜଣେ ପଣ୍ଡିତ ରାମଦୟାଲ ଠାକୁରଙ୍କ ନିକଟକୁ ନେଇଗଲେ; ତାଙ୍କ ଇଚ୍ଛା ପୁଅ ହିନ୍ଦୀ ପଢ଼ିବ । ସଂସ୍କୃତ ସିନା ଚନ୍ଦନକୁ ଭାରି ଅଡୁଆ ଲାଗୁଥିଲା, ହିନ୍ଦୀ ମୂଳରୁ ତାକୁ ଭାରି ଭଲ ଲାଗିଲା । ଚାହୁଁଚାହୁଁ ଚନ୍ଦନ ଅନ୍ୟାନ୍ୟ ସମସ୍ତ ଛାତ୍ରଙ୍କୁ ହିନ୍ଦୀ ଶିକ୍ଷାରେ ବଳିଗଲା ଏବଂ ଅଳ୍ପଦିନ ମଧ୍ୟରେ ଚନ୍ଦନ ହିନ୍ଦୀକୁ ବେଶ୍ ଆୟତ୍ତ କରିପାରିଲା ।

ଆଜିକାଲି ପରି ସେତେବେଳେ ମଧ୍ୟ ସାରା ଭାରତବର୍ଷରୁ, ବିଶେଷକରି ପଶ୍ଚିମ ଓ ଉତ୍ତର ଭାରତରୁ ଅନେକ ଯାତ୍ରୀ ଜଗନ୍ନାଥ ଦର୍ଶନ କରିବାକୁ ପୁରୀ ଆସୁଥିଲେ । ଭୀମସେନଙ୍କର ମହାପ୍ରଭୁଙ୍କ ଅଙ୍ଗିଲା ସେବା କାର୍ଯ୍ୟ ଛଡ଼ା ଆଉ ଗୋଟିଏ କାର୍ଯ୍ୟ ଥିଲା, ତାହା ହେଉଛି ବିଭିନ୍ନ ଯାତ୍ରୀ ଥିବା ଅଞ୍ଚଳକୁ ବୁଲିଯିବା । ଉତ୍ତର ଭାରତର ବିଠୁର (ବର୍ତ୍ତମାନ ଉତ୍ତର ପ୍ରଦେଶରେ ଅବସ୍ଥିତ) ଥିଲା ଭୀମସେନଙ୍କ ନିଜ ଇଲାକା ।

ବିଠୁରର ସେ ସମୟର ଇତିହାସ ବଡ଼ କରୁଣ । ପେଶବା ବାଜିରାଓ ନିଜ ରାଜ୍ୟ ଛାଡ଼ି ଆସି ସେତେବେଳେ ବିଠୁରଠାରେ ରହୁ ଥାଆନ୍ତି; କିନ୍ତୁ ଏହି ବିଠୁର ଅଳ୍ପକାଳ ପରେ ହେଲା ଭାରତବିଖ୍ୟାତ । ଭାରତର ପ୍ରଥମ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଥିଲା ଏହିଠାରୁ ।

ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ଦିଲ୍ଲୀର ମୋଗଲ ସମ୍ରାଟ

ଦୁର୍ବଳ ଥିଲେ । ମୋଗଲ ସାମ୍ରାଜ୍ୟ ଭାଙ୍ଗି ପଡ଼ିଥିଲା କହିଲେ ଚଳେ । ଏହି ସୁଯୋଗରେ ଛୋଟିଆ ଛୋଟିଆ ବହୁ ରାଜ୍ୟ ସେତେବେଳେ ଭାରତର ଚାରିଆଡ଼େ ମୁଣ୍ଡ ଟେକିଲେଣି । ଅବସ୍ଥା ବୁଝି କେତେକ ନିଜକୁ ସ୍ୱାଧୀନ ବୋଲି ଘୋଷଣା କଲେଣି ଏବଂ ଆଉ କେତେକ ଏହି ସୁଯୋଗରେ ପର ରାଜ୍ୟ ଆକ୍ରମଣକରି ନିଜ ରାଜ୍ୟ ବଢ଼ାଇବାକୁ ସବୁବେଳେ ସଚେଷ୍ଟ ଥାନ୍ତି । ସେଥିଲାଗି ଦେଶସାରା ଖଣ୍ଡଯୁଦ୍ଧ ଲାଗି ରହିଥାଏ । ଦେଶର ବୃହତ୍ତର ସ୍ୱାର୍ଥ ଦେଖିବାକୁ କେହି ପ୍ରସ୍ତୁତ ନ ଥାନ୍ତି ।

ବଣିକ ଇଂରେଜମାନେ ଏହି ଅପୂର୍ବ ସୁଯୋଗର ଲାଭ ଉଠାଇ ଜଣଙ୍କ ବିରୁଦ୍ଧରେ ଆଉ ଜଣକୁ ଲଗାଇଦେଇ କୌଶଳରେ ନିଜ ରାଜ୍ୟ ବିସ୍ତାରରେ ବ୍ୟସ୍ତ ଥାନ୍ତି । ସେମାନଙ୍କର ଏହି ଅପଚେଷ୍ଟାକୁ ଶେଷରେ ବାଧା ଦେବାକୁ ଚେଷ୍ଟା କଲା ମରହଟ୍ଟାଶକ୍ତି; କିନ୍ତୁ ସେମାନଙ୍କୁ ସାହାଯ୍ୟ କରିବା ବଦଳରେ ଅଧିକାଂଶ ଦେଶୀୟ ରାଜ୍ୟ ସେମାନଙ୍କର ବିପକ୍ଷ ଆଚରଣ କଲେ । ଫଳତଃ ମରହଟ୍ଟାଶକ୍ତି କ୍ରମଶଃ ଦୁର୍ବଳ ହୋଇ ଶେଷକୁ ଭାଙ୍ଗିପଡ଼ିଲା କ୍ଷୁଦ୍ର କ୍ଷୁଦ୍ର ଅଂଶରେ । ପେଶବା ବାଜିରାଓ ଅସହାୟ ଅବସ୍ଥାରେ ରାଜ୍ୟ ଛାଡ଼ିଦେଇ ଚାଲି ଆସିଲେ ବିଠୁରକୁ । ଶେଷକୁ ଇଂରେଜଙ୍କ ଅନୁଗ୍ରହରୁ ମାସକୁ ମାସ ପେନ୍‌ସନ (ଭତ୍ତା) ପାଇ ବିଠୁରରେ ସାଜି ବସିଲେ ଏକ ନକ୍‌ଲି ରଜା ।

କୁଆଡ଼େ ଗଲା ଛତ୍ରପତି ଶିବାଜୀଙ୍କ ବିଶାଳ ରାଜ୍ୟ । କୁଆଡ଼େ ଗଲା ସର୍ବଜୟୀ ଭାଗୱା ଝଣ୍ଡା ? ଭାରତ ପକ୍ଷରେ ଏହା ଏକ ଚରମ ଦୁର୍ଦ୍ଦିନ । ପେଶବାଙ୍କ ସଙ୍ଗେ ଅନେକ ସମ୍ଭ୍ରାନ୍ତ ମରହଟ୍ଟା ମଧ ଚାଲି ଆସିଥିଲେ ବିଠୁରକୁ । ମାଧବ ରାଓଙ୍କ ନାମ ଉଚ୍ଚାରଣ କରୁ ନ ଥିଲେ ସୁଦ୍ଧା ଏହାଙ୍କ ଆତ୍ମଜ ନାନାସାହେବ ହେଲେ ଭାରତ ଇତିହାସର ଜଣେ ଖ୍ୟାତନାମା ପୁରୁଷ । ଅପୁତ୍ରକ ବାଜୀରାଓ, ମାଧବ ରାଓଙ୍କ ପୁତ୍ର ନାନାସାହେବଙ୍କୁ ପୋଷ୍ୟପୁତ୍ର କରି ନେଇଥିଲେ ।

କାଶୀର ମରହଟ୍ଟା ଶାସକ ଚିମାଜୀଙ୍କର ଦେବାନ୍ ଥାଆନ୍ତି ମୋରାପନ୍ତ ତାମ୍ବେ । ସେ ଥରେ ତୀର୍ଥ କରିବା ଉଦ୍ଦେଶ୍ୟରେ ନିଜର ପରିବାରବର୍ଗ ସହ ଆସିଥାନ୍ତି ପୁରୀକୁ । ତାଙ୍କର ପରିବାର ମଧ୍ୟରେ ଥାଏ ତାଙ୍କର ଦୁଇବର୍ଷ ବୟସ୍କା ଶିଶୁକନ୍ୟା ମାନୁ ବାଈ । ପୁରୀରେ ଅବସ୍ଥାନ କାଳରେ ମୋରାପନ୍ତଙ୍କର ଭୀମସେନଙ୍କ ପରିବାର ସହ ଘନିଷ୍ଠତା ହେଲା । କହିବାକୁ ଗଲେ ଚନ୍ଦନ ହଜୁରୀଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂତ୍ରପାତ ହେଲା ଏହିଠାରେ । ଘନିଷ୍ଠତା କ୍ରମେ ପରିଣତ ହେଲା ଗୁରୁ ଶିଷ୍ୟ ସମ୍ପର୍କରେ ଏବଂ ହଜୁରୀ ପରିବାର ହେଲେ ତାମ୍ବେ ପରିବାରର ଗୁରୁଜୀ ।

ଏହାର ଅଳ୍ପ କେତେଦିନ ପରେ ମୋରାପନ୍ତ ପେଶବାଙ୍କ ଦରବାରରେ ଗୋଟିଏ ଚାକିରୀ ଗ୍ରହଣକରି ଚାଲିଗଲେ ବିଠୁରକୁ । ବିଠୁରକୁ ଆସିବାର ଅଳ୍ପକାଳପରେ ପେଶବା ବାଜିରାଓଙ୍କ ଦୃଷ୍ଟି ପଡ଼ିଲା ମୋରାପନ୍ତଙ୍କର ଶିଶୁକନ୍ୟା ମାନୁବାଈଙ୍କ ଉପରେ । ପିଲାଟିର ଅନିନ୍ଦ୍ୟସୁନ୍ଦର ଚେହେରା, ଅପୂର୍ବ ବାଲ୍ୟଚପଳତା ବୃଦ୍ଧ ପେଶବାଙ୍କୁ ମୁଗ୍ଧ କରିଦେଲା । ଶେଷକୁ ଲୋଭ ସମ୍ଭାଳି ନ ପାରି ପେଶବା ବାଜୀରାଓ ମାନୁବାଈଙ୍କୁ ନିଜ କନ୍ୟାରୂପେ ପାଳିବାର ସମସ୍ତ ଦାୟିତ୍ୱ ଗ୍ରହଣକଲେ ।

ନିଜର ଅପୂର୍ବ ଚପଳତା ଓ ବୁଦ୍ଧିମତ୍ତା ଯୋଗୁଁ ସମସ୍ତ ଦୁରନ୍ତପଣିଆ ସତ୍ତ୍ୱେ ମାନୁବାଈ ବିଠୁର ନଅରରେ ହେଲା ସମସ୍ତଙ୍କ ପ୍ରିୟପାତ୍ରୀ । ମାନୁବାଈର ନାଁ ବିଠୁର ରାଜପ୍ରସାଦରେ ପରିବର୍ତ୍ତିତ ହୋଇ ଛବେଲୀର ନାମ ଧାରଣକଲା । ବାଳକ ନାନା ସାହେବ ହେଲା ଛବେଲୀର ପ୍ରଧାନ ସାଥୀ । ନାନାସାହେବ ଯାହା କରିବ ଛବେଲୀର ତାହା କରିବା ନିତାନ୍ତ ଦରକାର । ଫଳତଃ ନାନାସାହେବଙ୍କ ସଙ୍ଗରେ ଛବେଲୀ ଶିଖିଲା ପାଠ, ଶିଖିଲା ଘୋଡ଼ାଚଢ଼ା ଓ ତରବାରୀ ଚାଳନା ।

ଭୀମସେନ ଇତିମଧ୍ୟରେ ନିଜର ଯଜମାନଙ୍କୁ ଦେଖିବା ଉଦ୍ଦେଶ୍ୟରେ କେତେଥର ଆସିଲେଣି ବିଠୁରକୁ । ତାଙ୍କ ସଙ୍ଗରେ ଥାଏ ବାଳକ ଚନ୍ଦନ । ଥରେ ବୃଦ୍ଧ ଭୀମସେନ ଛବେଲୀର ଦୁଷ୍ଟାମି ଓ ତୀକ୍ଷ୍ଣ ବୁଦ୍ଧିକୁ ଲକ୍ଷ୍ୟକରି ମୋରାପନ୍ତଙ୍କୁ କହିଲେ- 'ତାମ୍ଭେ ! ଦେଖ, ତୁମ ଝିଅ ଦିନେ ରାଜରାଣୀ ହେବ ।'

କଥାଟା ସେତେବେଳେ କେହି ବିଶ୍ୱାସକରି ନଥିଲେ; ନ କରିବାର ମଧ୍ୟ ଅନେକ କାରଣ ଥିଲା; କିନ୍ତୁ ବୃଦ୍ଧ ଭୀମସେନଙ୍କ ଭବିଷ୍ୟତ୍‌ବାଣୀ ଫଳିଲା ୧୮୪୮ ମସିହାରେ । ସେତେବେଳେ ମାନୁବାଈଙ୍କର ବୟସ ୧୫ ବର୍ଷ । ବୃଦ୍ଧ ପେଶବାଙ୍କ ଚେଷ୍ଟାରେ ମାନୁବାଈଙ୍କର ବିବାହ ହେଲା ଝାନ୍‌ସୀ ଅଧିପତି ଗଙ୍ଗାଧର ରାଓଙ୍କ ସହିତ । ଛବେଲୀ ପରିବର୍ତ୍ତିତ ହେଲା ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ରୂପେ । ସେହିଦିନୁ ଇତିହାସର ସୂତ୍ରପାତ ହେଲା ।

ଲକ୍ଷ୍ମୀବାଈଙ୍କ ଏହି ସୌଭାଗ୍ୟ ବେଶିଦିନ ସ୍ଥାୟୀ ହୋଇ ନ ଥିଲା । ମାତ୍ର ଚାରିବର୍ଷ ମଧ୍ୟରେ ରାଣୀ ପ୍ରଥମେ ପୁତ୍ର ଓ ପରେ ସ୍ୱାମୀଙ୍କୁ ହରାଇ ହେଲେ ବିଧବା । ରାଜ୍ୟ ଶାସନର ଗୁରୁଦାୟିତ୍ୱ ଆସି ପହଞ୍ଚିଲା ୧୯ ବର୍ଷର ବିଧବା ରାଣୀଙ୍କ ଉପରେ । ଅଳ୍ପ ସମୟ ମଧ୍ୟରେ ଏତେଗୁଡ଼ାଏ ବିପଦ ରାଣୀଙ୍କୁ କରିଦେଲା ଅଧୀର ଓ ବିବ୍ରତ । ବ୍ୟସ୍ତହୋଇ ରାଣୀ ପ୍ରାସାଦର ଦୁର୍ଗା ବିଗ୍ରହକୁ (ଯାହାକୁ ସେ ନିଜେ ପୂଜା କରୁଥିଲେ) ପଠାଇ ଦେଲେ

ଚନ୍ଦନ ହଜୁରୀଙ୍କ ନିକଟକୁ । ବର୍ତ୍ତମାନ ସୁଦ୍ଧା ସେହି ବିଗ୍ରହ ପୁରୀରେ ଚନ୍ଦନ ହଜୁରୀଙ୍କ ବଂଶଧରଙ୍କ ଗୃହରେ ବିରାଜମାନ ।

ରାଣୀ ଠିକ୍ କଲେ ଅବଶିଷ୍ଟ ଜୀବନ ପୂଜା ଆରାଧନା ଓ ରାଜ୍ୟ ପରିଚାଳନାରେ କଟାଇ ଦେବେ; କିନ୍ତୁ ବାଦ ସାଧିଲା ଭାଗ୍ୟ । ଭାରତରେ ବ୍ରିଟିଶ ଶାସନକୁ ସୁଦୃଢ଼ କରି ଯାଇଥିଲେ ଦୁଇଜଣ ଇଂରେଜ - ଲର୍ଡ଼ କ୍ଲାଇବ ଓ ଲର୍ଡ଼ ଡେଲହାଉସୀ । କ୍ଲାଇବ ଯେଉଁ କାର୍ଯ୍ୟଟି ଆରମ୍ଭ କରିଥିଲେ, ଡେଲହାଉସୀ ତାହାକୁ କରିଗଲେ ସୁଦୃଢ଼ ।

ରାଜପ୍ରତିନିଧି ହିସାବରେ ଲର୍ଡ଼ ଡେଲହାଉସୀ ଭାରତରେ ପାଦ ନ ଦେଉଣୁ, ସଗର୍ବରେ ଘୋଷଣା କଲେ, "I will level the land of Hindustan" ଅର୍ଥାତ୍ ଭାରତକୁ ମୁଁ ସମତଳ କରିଦେବି । ଏହି ଦମ୍ଭୋକ୍ତିର ପ୍ରଧାନ ମର୍ମ ହେଲା, ଏହି ବିରାଟ ଭାରତ ଭୂମି ଇଂରାଜର ପଦାନତ ହେବା ଆବଶ୍ୟକ ଏବଂ ତାକୁ କାର୍ଯ୍ୟକାରୀ କରିବେ ଲର୍ଡ଼ ଡେଲହାଉସୀ । ସେ ଦେଖିଲେ ଜୟ ଓ ରାଜ୍ୟଶାସନ ଲାଗି ତରବାରୀଠାରୁ ଆହୁରି ବଳୀୟାନ୍ ହେଉଛି କୂଟନୀତି । ଡେଲହାଉସୀଙ୍କ ପୂର୍ବତନ ଇଂରେଜ ଶାସକମାନେ କେବଳ ଅସି ବଳରେ ରାଜ୍ୟ ଜୟ କରି ଆସିଛନ୍ତି; କିନ୍ତୁ ଡେଲହାଉସୀ ଠିକ୍ କଲେ ବିଶାଳ ଭାରତକୁ ପଦାନତ କରିବାକୁ ହେଲେ ଦୁଇଟିଯାକ ଅସ୍ତ୍ରଅସି ଏବଂ କୂଟନୀତିକୁ ସମାନଭାବରେ ଚଳାଇବାକୁ ପଡ଼ିବ । ଫଳରେ ଡେଲହାଉସୀଙ୍କ ଉର୍ବର ମସ୍ତିଷ୍କରୁ ବାହାରିଲା ବ୍ରିଟିଶ କୂଟନୀତିର ଅନ୍ୟ ଏକ ଶ୍ରେଷ୍ଠ ଅବଦାନ "ରାଜ୍ୟସ୍ୱତ୍ୱ ଲୋପ ନୀତି ।"

ବ୍ରିଟିଶ ରାଜ୍ୟ ବିସ୍ତାରର ଏହା ହେଲା ଏକ ମାରାତ୍ମକ ଅସ୍ତ୍ର । ଏହି ଆଇନ୍ ଅନୁସାରେ କୌଣସି ନୃପତି ଅପୁତ୍ରକ ହେଲେ, ସେ କୌଣସି, ପୋଷ୍ୟପୁତ୍ର ଗ୍ରହଣକରି ପାରିବେ ନାହିଁ ଏବଂ ରାଜାଙ୍କ ଅନ୍ତେ ରାଜ୍ୟଟି ବ୍ରିଟିଶ ଶାସନାଧୀନକୁ ଚାଲି ଆସିବ ।

ବିଧବା ରାଣୀ ଲକ୍ଷ୍ମୀବାଈ ଭୀତା ହୋଇ ପଡ଼ିଲେ । ସ୍ୱାମୀ ତାଙ୍କର ଅପୁତ୍ରକଭାବେ ପ୍ରାଣତ୍ୟାଗ କରିଛନ୍ତି । ଅବଶ୍ୟ ମୃତ୍ୟୁପୂର୍ବରୁ ହିନ୍ଦୁଶାସ୍ତ୍ରାନୁସାରେ ସ୍ୱାମୀ ସ୍ତ୍ରୀ ଉଭୟେ ଦାମୋଦରକୁ ପୋଷ୍ୟପୁତ୍ର ହିସାବରେ ଗ୍ରହଣ କରିଛନ୍ତି; ଅର୍ଥାତ୍ ନ୍ୟାୟତଃ ଦାମୋଦର ଝାନ୍ସୀର ଉତ୍ତରାଧିକାରୀ, କିନ୍ତୁ ଡେଲହାଉସୀଙ୍କ ନୂତନ ଆଇନ ତାହା ମାନିବାକୁ ନାରାଜ । ଦାମୋଦର ନାବାଳକ ଥିବାରୁ ରାଣୀ ଅଭିଭାବିକା ହିସାବରେ ଯେଉଁ ରାଜ୍ୟଶାସନ କରୁଛନ୍ତି, ଇଂରେଜପ୍ରତିନିଧି ତାହା ମାନିବାକୁ ଅନିଚ୍ଛୁକ ଏବଂ ଯେଉଁ ବିପର୍ଯ୍ୟୟ ଆଶଙ୍କା କରାଯାଉଥିଲା, ତାହା ଘଟିଲା ଅଳ୍ପଦିନ ପରେ ।

ଲର୍ଡ଼ ଡେଲହାଉସୀଙ୍କ ପ୍ରତିନିଧି (ରେସିଡେଣ୍ଟ) ଆସି ରାଣୀଙ୍କୁ ଜଣାଇଦେଲେ-

"ଇଂରେଜ ସରକାର ଦାମୋଦରଙ୍କୁ ଝାନ୍‌ସୀର ଉତ୍ତରାଧିକାରୀ ବୋଲି ମାନେ ନାହିଁ । ନୂତନ ଆଇନ ଅନୁଯାୟୀ ଝାନସୀ ଆଜିଠାରୁ ଖୋଦ୍ ଇଂରେଜ ଶାସିତ ଅଞ୍ଚଳ ବୋଲି ଗଣା ହେବ ।"

କଥା ଓ କାର୍ଯ୍ୟ ମଧ୍ୟରେ ସମୟର ବ୍ୟବଧାନ ଆଦୌ ନ ଥିଲା । ରେସିଡେଣ୍ଟଙ୍କ ସଙ୍ଗେସଙ୍ଗେ ଆସିଲେ ଇଂରେଜ ସୈନ୍ୟ । ଝାନ୍‌ସୀ ଦୁର୍ଗ ଦଖଲ ହୋଇ ତାହା ଉପରେ ଉଡ଼ିଲା ବ୍ରିଟିଶ ପତାକା ୟୁନିଅନ୍ ଜ୍ୟାକ୍ । ଝାନସୀ ଶାସକରୂପେ ଆସି ବସିଲେ ଜଣେ ଇଂରାଜ ସେନାପତି କ୍ୟାପଟେନ୍ ସ୍କୀନ୍‌ର । ଗଙ୍ଗାଧର ରାଓଙ୍କ ବିଧବା ସ୍ତ୍ରୀ ହିସାବରେ ରାଣୀଙ୍କୁ ମିଳିଲା ମାସିକ ଭତ୍ତା ପାଞ୍ଚ ହଜାର ଟଙ୍କା – ରାଜ୍ୟ ଥାଇ ସୁଦ୍ଧା ରାଣୀ ଆଜି ରାଜ୍ୟହୀନା, ରାଜରାଣୀ ହେବା ପରିବର୍ତ୍ତେ ହେଲେ ଅନ୍ୟର ଦୟାରପାତ୍ରୀ । ଯେ କୌଣସି ବ୍ୟକ୍ତିପକ୍ଷରେ ଏହି ଆଘାତ ମର୍ମନ୍ତୁଦ ।

ଅସହାୟ ବିଧବା ରାଣୀ ଏହି ନୂତନ ବିଧାନ ମାନି ନେବାକୁ ବାଧ ହେଲେ; କିନ୍ତୁ ଅନ୍ତରରେ ଜାଗି ଉଠିଲା ତୀବ୍ର ଇଂରେଜ ବିଦ୍ୱେଷ । ପ୍ରତିହିଂସା ନେବାରେ ଅଦମ୍ୟ ଇଚ୍ଛା ମନ ମଧ୍ୟରେ ଗୁମୁରି ବୁଲିଲା; କିନ୍ତୁ ଅପମାନ ପହଞ୍ଚିଲା ଚରମ ସୀମାରେ, ଯେତେବେଳେ ଇଂରେଜ ଶାସକ ଦିନେ ଆସି ରାଣୀଙ୍କୁ ବୁଝାଇଲେ- "ରାଣୀ ଲକ୍ଷ୍ମୀବାଈ, ତୁମ୍ଭେ ଇଂରାଜ ସରକାରଙ୍କ ଦୟାର ପାତ୍ରୀ । ତେଣୁ ଇଂରେଜଙ୍କ ନିକଟରେ ତୁମର କୃତଜ୍ଞ ରହିବା ଉଚିତ ।" ଦୁଃଖ ଓ ହତାଶାରେ ରାଣୀଙ୍କ ଆଖିରୁ ସେଦିନ ଧାରାଶ୍ରାବଣ ବୋହିଥିଲା । ଝାନ୍‌ସୀର ଜନସାଧାରଣ ପ୍ରିୟ ରାଣୀଙ୍କର ଏଭଳି ଅବସ୍ଥା ଦେଖି ସେଦିନ କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଇଥିଲେ । ଇଂରେଜ ଶକ୍ତି ବିରୋଦ୍ଧରେ ଯୁଦ୍ଧ ଘୋଷଣା କରିବା ଝାନ୍‌ସୀ ପକ୍ଷରେ ସେତେବେଳେ ସମ୍ପୂର୍ଣ୍ଣ ଅସମ୍ଭବ ।

କେତେବର୍ଷ ବିତିଗଲା । ତା'ପରେ ଆସିଲା ଆହୁରି ଏକ ଧକ୍‌କା, ଆହୁରି ଏକ ଅପମାନକର ଘଟଣା । ସେତେବେଳେ ଶିଶୁ ଦାମୋଦର କୈଶୋରର ଦ୍ୱାରଦେଶରେ । ବ୍ରତୋପନୟନର ସମୟ ଆଗତ । ଅଥଚ ବ୍ରତ ଲାଗି ଯେଉଁ ଅର୍ଥ ଆବଶ୍ୟକ, ରାଣୀଙ୍କ ନିକଟରେ ତାହା ନାହିଁ । ରାଜଭଣ୍ଡାର ରେସିଡେଣ୍ଟଙ୍କ ଦଖଲରେ । ତହିଁ ଉପରେ ରାଣୀଙ୍କର କୌଣସି ଅଧିକାର ନାହିଁ ।

ରାଜ୍ୟର ପ୍ରକୃତ ମାଲିକର ବ୍ରତ; କିନ୍ତୁ ସେହି କ୍ରିୟାନୁଷ୍ଠାନ ଲାଗି ନିର୍ଭର କରିବାକୁ ପଡୁଛି ଇଂରେଜର ଦୟା ଉପରେ । ନିରୁପାୟ ରାଣୀ ରେସିଡେଣ୍ଟଙ୍କ ନିକଟରେ ଆବେଦନ କଲେ ଏକ ଲକ୍ଷଟଙ୍କା ଧାର ପାଇଁ । ଉତ୍ତର ଆସିଲା- "ରାଜ୍ୟର ଚାରିଜଣ ଧନୀ ବ୍ୟକ୍ତି ଯଦି ଜାମିନ୍ ହୁଅନ୍ତି, ତେବେ ସେ ଟଙ୍କା ଧାର ସ୍ୱରୂପ ମିଳିପାରେ ।"

ନିଜର ଟଙ୍କା ନିଜେ ଧାର ନେବା; ପୁଣି ସେଥିଲାଗି ଚାରିଜଣ ପ୍ରଜାଙ୍କୁ ଜାମିନ୍ ରହିବାକୁ ନେହୁରା ହେବା ଯେ କୌଣସି ରାଜାଙ୍କ ପକ୍ଷରେ ଚରମ ଅସମ୍ମାନକର । ରାଣୀ ଲକ୍ଷ୍ମୀବାଈଙ୍କ ପକ୍ଷରେ ତାହା ହିଁ ହୋଇଥିଲା । ରାଣୀ ଭଲ ଭାବରେ ଉପଲବଧି କଲେ, ସ୍ୱାଧୀନତା ବିନା ରାଜ୍ୟ ଶାସନ କରିବା କିପରି ଗ୍ଲାନିକର । ରାଣୀ ପରାମର୍ଶ ଲୋଡ଼ିଲେ ମନ୍ତ୍ରୀ ଲକ୍ଷ୍ମଣ ରାଓଙ୍କର ।

ଲକ୍ଷ୍ମଣ ରାଓ କୌଣସି ଜମିଦାର ଗୁମସ୍ତା ହେବାକୁ ଯୋଗ୍ୟ, କୌଣସି ରାଜ୍ୟର ପ୍ରଧାନମନ୍ତ୍ରୀ ପଦକୁ ନୁହେଁ । ମନ୍ତ୍ରୀଙ୍କଠାରୁ ନିରୁତ୍ସାହପୂର୍ଣ୍ଣ ଜବାବ ପାଇ ରାଣୀ ଠିକ୍ କଲେ କୌଣସିମତେ ବ୍ରତ କାର୍ଯ୍ୟଟି ଶେଷ କଲାପରେ ଚନ୍ଦନ ହଜୁରୀଙ୍କର ପରାମର୍ଶ ଲୋଡ଼ିବେ । ଯଦି ତୀର୍ଥଗୁରୁଙ୍କଠାରୁ ସେପରି କିଛି ଆଶାଜନକ ପରାମର୍ଶ ନ ମିଳେ, ତେବେ ସେ ରାଜ୍ୟ ଛାଡ଼ି କାଶୀ ଚାଲିଯାଇ ଶେଷଜୀବନ ଧର୍ମ କର୍ମରେ ଅତିବାହିତ କରିବେ ।

ବାଧ ହୋଇ ଏହି ହୀନ ସର୍ତ୍ତରେ ଟଙ୍କା ଧାର ନିଆ ହୋଇ ପୁତ୍ରର ବ୍ରତ କାର୍ଯ୍ୟ ଶେଷ କରାଗଲା । ତା'ପରେ ରାଣୀ ଚନ୍ଦନ ହଜୁରୀଙ୍କ ନିକଟକୁ ନିମ୍ନଲିଖିତ ପତ୍ରଟି ଲେଖିଲେ:

ତୀର୍ଥଗୁରୁ ପୁରୁଷୋତ୍ତମ କ୍ଷେତ୍ର ପଣ୍ଡା ମହାରାଜ ଖୋଦ ଶ୍ରୀ ଚନ୍ଦନ ହଜୁରୀ ଏବଂ ଛଡ଼ିଦାର ଗୁରୁଙ୍କୁ ମହାରାଣୀଙ୍କ ଜୟ ଶ୍ରୀରାମ ।

ମହାଶୟ ।

ଏପରି ପତ୍ର ଲେଖିବାର ବହୁତ ଆବଶ୍ୟକତା ପଡ଼ିଥିବାରୁ ଲେଖୁଛି । ଆପଣ ଆମର ତୀର୍ଥଗୁରୁ ଓ ପିତାଜୀଙ୍କର ଗୁରୁଭାଇ ଅଟନ୍ତି । ଆପଣଙ୍କ ବିଦ୍‌ବତ୍ତା ଓ ବଳ ମୋର ବର୍ତ୍ତମାନ ନିରାଶା ଭିତରେ ଏକ ଆଶାର ସଞ୍ଚାର କରୁଛି । ମୁଁ ଆପଣଙ୍କ କହିବା ଅନୁସାରେ, ଶୁକ୍ରବାର ମହାଲକ୍ଷ୍ମୀ ବ୍ରତ ପାଳନ କରୁଅଛି ଏବଂ ଜୀବନ ଥିବା ଯାଏଁ ପାଳନ କରୁଥିବି । ମୁଁ ତାହାର ବାସ୍ତବ ଉପକାର- ବଡ଼ ବ୍ୟଥିତ ଅବସ୍ଥାରେ ଅଛି ।

ଝାନ୍‌ସୀର ଚାରିଆଡ଼େ ଗୋବଧ ହେଉଛି । ଲଳିତପୁର ମଧ୍ୟ ସେହି ଅବସ୍ଥାକୁ ପ୍ରାପ୍ତ ହୋଇଛି । ଗତବର୍ଷ ମୁଁ ମୋର ଋଣ ଶୁଝିବାକୁ ଟଙ୍କା ଚାହିଥିଲି, କିନ୍ତୁ କମ୍ପାନୀ ମୋ' କଥାପ୍ରତି କର୍ଣ୍ଣପାତ କଲାନାହିଁ । ବର୍ତ୍ତମାନ ମୁଁ ଅର୍ଥହୀନା, ଅତି କଷ୍ଟରେ ଚଳୁଛି, ଏପରିକି ପ୍ରତିନିତ୍ୟ ଦାନର ଟଙ୍କା ନାହିଁ ।

ଆପଣ ମୋର ତୀର୍ଥଗୁରୁ ଓ ବିଶେଷରେ ବିଜ୍ଞ ଅଟନ୍ତି । ଆପଣ ମୋତେ ଏ ଦୁର୍ଦ୍ଦିନରେ ସାହାଯ୍ୟ କରନ୍ତୁ । ଏଭଳି କଷ୍ଟ ବରଦାସ୍ତ କରିବା ମୋ' ପକ୍ଷରେ ସମ୍ଭବ

ନୁହେଁ । ମୁଁ ଆପଣଙ୍କ ଶୁଭାଗମନକୁ ଅପେକ୍ଷା କଲି । ଜଗନ୍ନାଥଙ୍କ ନିକଟରେ ଜଣାଇ ଆପଣ ଆସନ୍ତୁ । ଅବଶ୍ୟ ପଣ୍ଡାଜୀ (ଭୀମସେନ ହଜୁରୀ) ଥିଲେ ଆପଣଙ୍କର କୌଣସି ଅସୁବିଧା ହୋଇ ନ ଥାଆନ୍ତା ।

ଆପଣଙ୍କର ଶିଷ୍ୟା

ଲକ୍ଷ୍ମୀବାଈ

ଚନ୍ଦନ ହଜୁରୀ ଉକ୍ତ ଚିଠି ଖଣ୍ଡିକ ପାଇ ସ୍ଥିର ହୋଇ ବସି ପାରିଲେ ନାହିଁ । ଅବଶ୍ୟ ଏହା ଆଗରୁ ଝାନ୍‌ସୀକୁ ଯିବାଲାଗି ସନିର୍ବନ୍ଧ ଅନୁରୋଧ କରି କେତେ ଖଣ୍ଡି ଚିଠି ରାଣୀ ଲେଖିଥିଲେ; କିନ୍ତୁ ଏହି ଚିଠି ଖଣ୍ଡିକ ପାଇବାପରେ ଚନ୍ଦନ ହଜୁରୀ ଦେଖିଲେ ଝାନ୍‌ସୀକୁ ଯିବା ନିତାନ୍ତ ଆବଶ୍ୟକ ।

୧୮୫୭ ସାଲ, ଜାନୁୟାରୀ ୨୪ ତାରିଖ ଦିନ ଚନ୍ଦନ ହଜୁରୀ ବାହାରିଲେ ଝାନ୍‌ସୀ ଅଭିମୁଖେ । ଝାନ୍‌ସୀରେ ପହଞ୍ଚି ଦେଖନ୍ତି, ରାଜ୍ୟସାରା ଇଂରେଜ ଶାସନ ବିରୋଧରେ ତୀବ୍ର ଅସନ୍ତୋଷ । ରାଣୀଙ୍କ ଅନ୍ତରରେ ନିରନ୍ତର ପ୍ରତିହିଂସା ବହ୍ନି ଜଳୁଛି । ଏଣେ ଲକ୍ଷ୍ମଣ ରାଓ ଓ ଅନ୍ୟାନ୍ୟ ମନ୍ତିଗଣ ଇଂରେଜ ଶାସକକୁ ତୋଷଣ କରିବାରେ ଅତୀବ ଉତ୍ସାହୀ, ତେଣୁ ରାଣୀଙ୍କ ଅବସ୍ଥା ବାସ୍ତବିକ ଶୋଚନୀୟ । ଇଂରେଜ ବଦ୍ୱେଷ ସମସ୍ତଙ୍କ ହୃଦୟକୁ ଅଧିକାର କରିଥିଲେ ହେଁ ବିଦ୍ରୋହ କରିବାର ଠିକ୍ ପନ୍ଥା କାହାରିକୁ ଜଣାନାହିଁ ।

ଚନ୍ଦନ ହଜୁରୀ ଠିକ୍ କଲେ, ପ୍ରଥମେ ଦେଶର ଅବସ୍ଥାକୁ ଭଲ ଭାବରେ ପର୍ଯ୍ୟବେକ୍ଷଣ ନ କଲା ପର୍ଯ୍ୟନ୍ତ ସେ କୌଣସି ପନ୍ଥା ବିଷୟରେ ମତାମତ ଦେବେନାହିଁ । ସେହି ଦିନଠାରୁ ଆରମ୍ଭ ହେଲା ଚନ୍ଦନ ହଜୁରୀଙ୍କ ନଗର ପରିକ୍ରମା, ଅବଶ୍ୟ ଉଦ୍ଦେଶ୍ୟ କ'ଣ କେହି ଜାଣିଲେ ନାହିଁ ।

ଦିନେ ସେ ସହରର ବାହାରେ ଥିବା ଏକ ଶିବମନ୍ଦିରର ଚଉତରାରେ ବସିଛନ୍ତି, ଦେଖିଲେ ଜଣେ ସାଧୁ ଆସି ମନ୍ଦିରର ମଣ୍ଡପରେ ବସିଲେ । କିଛି କ୍ଷଣପରେ ମନ୍ଦିର ମଧ୍ୟରୁ ଦୁଇଜଣ ଯୁବକ ଚାରିଆଡ଼େ ଅନାଇ ଅନାଇ ଯାଇଁ ସାଧୁଙ୍କ ନିକଟରେ ଉପସ୍ଥିତ ହେଲେ । ଯୁବକ ଦୁହିଁଙ୍କର ଚାଲିଚଳନ ଚନ୍ଦନ ହଜୁରୀଙ୍କ ମନରେ ସନ୍ଦେହ ଉପୁଜାଇଲା । ସେ ତିନି ଜଣଙ୍କୁ ଭଲ ଭାବରେ ଲକ୍ଷ୍ୟ କରିବା ଲାଗି ଗୋଟିଏ ଖମ୍ବ ଆଢୁଆଳରେ ଯାଇଁ ବସିଲେ । ତିନିଜଣଙ୍କ ମଧ୍ୟରେ କିଛି ସମୟ ନାନା କଥାବାର୍ତ୍ତା ହେଲାପରେ, ସନ୍ନ୍ୟାସୀ ଜଣେ ଯୁବକଙ୍କୁ ପଚାରିଲେ;

ସନ୍ନ୍ୟାସୀ- "ବ୍ୟବସ୍ଥା କେତେଦୂର କୃପନାରାୟଣ ?"

କୃପାନାରାୟଣ- କାମ ଅନେକ ବାଟ ଆଗେଇ ଗଲାଣି । ତେବେ ଦୁଇ ତିନି ଜଣଙ୍କର ଗତିବିଧି ଭାରି ସନ୍ଦେହଜନକ ମନେ ହେଉଛି ।"

ସନ୍ନ୍ୟାସ୍ୟ- "କଅଣ ସେମାନଙ୍କଠାରୁ ବିଶ୍ୱାସଘାତକତା ଆଶଙ୍କା କରୁଛ ? ଯଦି ତାହା ହୋଇଥାଏ, ତେବେ ଖୁବ୍ ସାବଧାନ ହୋଇ ଆଗେଇବା ଉଚିତ । ହଁ, ତୁମର ଗୋରା ସେନାପତିର ଚାଲିଚଳଣ କିପରି ?

କୃପାନାରାୟଣ- "ଆପଣ ତ ଜାଣନ୍ତି, ସାହେବ ମୋତେ କିପରି ବିଶ୍ୱାସ କରେ । ସେ ଏତେବେଳ ଯାଏଁ କିଛି ସନ୍ଦେହ କରିନାହିଁ ବୋଲି ମୋର ଧାରଣା; କିନ୍ତୁ ସେହି ଦୁଇ ତିନି ଜଣଙ୍କ ଯୋଗୁଁ ମୋର ଭୟ ହେଉଛି ।"

ଭଗତ୍ ସିଂ- "ମହାରାଜ ! ଆପଣ ଯଦି ଆଦେଶ ଦିଅନ୍ତେ, ତେବେ ସେ କେତେଟାଙ୍କୁ ମୁଁ ଗୁପ୍ତରେ ନିକାଶ କରି ଦିଅନ୍ତି ।"

ସନ୍ନ୍ୟାସୀ- "ସାବଧାନ ଭଗତ୍ ସିଂ ! ସେଭଳି କାର୍ଯ୍ୟ ଆଦୌ କରିବ ନାହିଁ, ଇଂରେଜ ଅଧୀନସ୍ଥ ସମସ୍ତ ଭାରତୀୟ ସିପାହୀଙ୍କୁ ଆମ ଦଳକୁ ଆଣିବାକୁ ପଡ଼ିବ । ତେଣୁ ବର୍ତ୍ତମାନ ଏଭଳି କିଛି କାର୍ଯ୍ୟ କରିବା ଅନୁଚିତ, ଯାହା ଯୋଗୁଁ ବିପକ୍ଷଙ୍କ ମନରେ ସନ୍ଦେହ ହୋଇପାରେ ।

କୃପାନାରାୟଣ ! ତୁମେ ତ ଗୋରା ସେନାପତିଙ୍କର ବିଶ୍ୱାସୀ ଅଟ । ଚେଷ୍ଟାକର ଯେପରି ସେନାପତି ସେ ଦୁଇ ତିନିଜଣଙ୍କ ଉପରେ ବିଶେଷ ରୂପେ ବିରକ୍ତ ହୋଇ ସେମାନଙ୍କୁ ଚାକିରିରୁ ବରଖାସ୍ତ କରିଦିଏ; ତାହା ହେଲେ ଆମ ହାତରେ କାଦୁଅ ନ ଲାଗି ମଧ୍ୟ କାମ ହାସଲ ହୋଇଯିବ । ହଁ, ଆଉ ଗୋଟିଏ କଥା; ଆଜି ଦୁର୍ଗକୁ ଫେରି ଗଲାବେଳେ ତୁମ ହାତରେ ମୁଁ ଗୋଟିଏ ପଦ୍ମଫୁଲ ଓ ଖଣ୍ଡିଏ ରୁଟି ଦେବି । ଏହି ପଦ୍ମଫୁଲ ହେଉଛି ଆଗାମୀ ବିପ୍ଳବର ପ୍ରତୀକ ଏବଂ ରୁଟି ଖଣ୍ଡି ହେଉଛି ଏକତାର ଚିହ୍ନ । ଦୁର୍ଗସ୍ଥ ସ୍ୱଦଳର ସମସ୍ତ ଲୋକଙ୍କୁ ଏହି ରୁଟିକୁ ଟିକିଏ ଟିକିଏ ଛିଣ୍ଡାଇ ଖାଇବାକୁ ଦେବ । ଆଚ୍ଛା, ଆଜି ଯାଅ । ଆସନ୍ତା ଏକାଦଶୀ ଦିନ ମୋତେ ପୁଣି ଏହିଠାରେ ଦେଖା କରିବ ।"

ପରସ୍ପରଠାରୁ ବିଦାୟ ନେବା ଆଗରୁ ଯୁବକ ଦୁଇଜଣ ସନ୍ନ୍ୟାସୀଙ୍କୁ ପ୍ରଣିପାତ କଲେ । ପ୍ରଣାମ କଲାବେଳେ ଧୀର ଓ ଗମ୍ଭୀର କଣ୍ଠରେ କହିବାର ଶୁଣାଗଲା- "ଜୟ ଅଖଣ୍ଡ ଭାରତର ଜୟ । ଅଜ୍ଞାତ ସେନାପତିଙ୍କର ଜୟ ।"

ଏହି ଘଟଣାଟି ବୁଦ୍ଧିମାନ୍ ଚନ୍ଦନ ହଜୁରୀଙ୍କୁ ଯେତିକି ଆଶ୍ଚର୍ଯ୍ୟାନ୍ୱିତ କରିଥିଲା, ତାହାଠାରୁ ବେଶି କରିଦେଲା ଆନନ୍ଦିତ । ରାଣୀ ଲକ୍ଷ୍ମୀବାଈ ଓ ଝାନ୍‌ସୀର ଅବସ୍ଥା ଚିନ୍ତା କରି ସେ ଥଳକୂଳ ପାଉ ନ ଥିଲେ; କିନ୍ତୁ ସେ ଦିନ ସେ ଦେଖିଲେ ଭାରତର ଚରମ ମୁହୂର୍ତ୍ତ ଆଗତ ପ୍ରାୟ । ଅତି ସନ୍ତର୍ପଣରେ ସେଠାରୁ ସେ ଦିନ ଚାଲି ଆସିଲେ ।

ଗୁପ୍ତରେ ଆହୁରି ଖବର ନେବାରେ ଜଣାଗଲା, ପେଶବାଙ୍କ ପୋଷ୍ୟପୁତ୍ର ନାନା ସାହେବ ଏହି ବିପ୍ଳବର ସୂତ୍ରଧର । ଏ ଖବରତକ ଚନ୍ଦନଙ୍କୁ ଭଲଭାବରେ ଜଣା ଯିବାପରେ ଦିନେ ସେ ହଠାତ୍ ଝାନ୍‌ସୀରୁ ଚାଲିଲେ ବିଠୁର ଅଭିମୁଖରେ । ସମସ୍ତେ ଜାଣିଲେ ହଜୁରୀ ମହାଶୟ ଯାଉଛନ୍ତି ନିଜର ଇଲାକା ପରିଦର୍ଶନ କରିବାକୁ ।

ବିଠୁରଠାରେ ପହଞ୍ଚି ଦେଖନ୍ତି ଲର୍ଡ଼ ଡେଲହାଉସୀଙ୍କ ନୂତନ ଆଇନର ଖଡ୍‌ଗ ସେତେବେଳକୁ ନାନା ସାହେବଙ୍କ ଉପରେ ପଡ଼ି ସାରିଲାଣି । ଆଇନ କହିଲା- "ନାନା ସାହେବ ତୁମ୍ଭେ ପେଶବାଙ୍କର ପୋଷ୍ୟପୁତ୍ର; ତେଣୁ ପେଶବା ପଦରେ ସମ୍ମାନ ଓ ଅଧିକାରରେ ତୁମ୍ଭର କୌଣସି ଦାବି ନାହିଁ । ବାଜୀରାଓଙ୍କୁ ମିଳୁଥିବା ଆଠଲକ୍ଷ ଟଙ୍କାର ବାର୍ଷିକ ପେନ୍‌ସନ ତୁମକୁ ମିଳିବନାହିଁ । ଇଂରେଜ ସରକାର ମନେ କରନ୍ତି ବାଜୀରାଓଙ୍କ ମୃତ୍ୟୁ ସଙ୍ଗେସଙ୍ଗେ ପେଶବା ବଂଶ ଭାରତରୁ ଲୋପ ପାଇଛି ।"

ଚନ୍ଦନ ହଜୁରୀ ପ୍ରଥମେ ଭାବିଥିଲେ ନାନା ସାହେବ ନିଶ୍ଚୟ ଇଂରାଜ ସରକାରର ଏହି ସିଦ୍ଧାନ୍ତରେ ଖୁବ୍ ବିଚଳିତ ହୋଇଥିବେ; କିନ୍ତୁ ବିଠୁରରେ ପହଞ୍ଚି ଦେଖନ୍ତି, ନାନା ସାହେବ ବିଚଳିତ ହେବା ପରିବର୍ତ୍ତେ ଲର୍ଡ଼ ଡେଲହାଉସୀଙ୍କ ଏହି କୁଚକ୍ର ଯୋଗୁଁ ମନେମନେ ଭାରି ଆନନ୍ଦିତ; କାରଣ ନୂତନ ଆଇନ ଇଂରେଜ ସରକାରର ଶତ୍ରୁ ସଂଖ୍ୟା ବଢ଼ାଇବା ସଂଙ୍ଗେସଙ୍ଗେ ଇଂରେଜ ବିଦ୍ୱେଷକୁ ଆପଣା ଛାଏଁ ତେଜି ଦେଇଛି ।

ବାର୍ଷିକ ୮ ଲକ୍ଷ ଟଙ୍କାର ପେନ୍‌ସନ ଦାବିଠାରୁ ଆହୁରି ଏକ ବିରାଟ ଦାବି- ଭାରତର ସ୍ୱାଧୀନତା – ଏହି ମାହାରାଷ୍ଟ୍ରୀୟ ରାଜପୁରୁଷ ବାଲ୍ୟକାଳରୁ ମନରେ ପୋଷଣ କରି ଆସୁଥିଲେ । ବିଦେଶୀଶକ୍ତିକୁ ଭାରତରୁ ବହିଷ୍କାର କରି ଏକ ଅଖଣ୍ଡ ସ୍ୱାଧୀନ ଭାରତ ଗଢ଼ିବା ହେଲା ନାନା ସାହେବଙ୍କର ଅନ୍ତରର କାମନା । ଡେଲହାଉସୀଙ୍କର ଏହି ନୂତନ ଆଇନ ତାଙ୍କୁ ଦେଲା ଅପୂର୍ବ ସୁଯୋଗ । ଏହି ସୁଯୋଗରେ ବିକ୍ଷୁବ୍‌ଧ ଶକ୍ତିମାନଙ୍କୁ ଏକତ୍ର କରି ଇଂରେଜଙ୍କୁ ଆକ୍ରମଣ କରିବା ହେଲା ନାନା ସାହେବଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଆଉ ଏହି ଗୁରୁତର କାର୍ଯ୍ୟରେ ତାଙ୍କର ସହକର୍ମୀ ହେଲେ ରାଜପ୍ରାସାଦର ଏକ ସାମାନ୍ୟ ହିସାବନବିସ ତାନ୍ତିଆଟୋପୀ- ସିପାହୀ ବିଦ୍ରୋହର ଅନ୍ୟତମ ପ୍ରଧାନ ନେତା ।

ଏହି ଦୁହିଙ୍କର ପରାମର୍ଶରେ ଗଢ଼ା ଚାଲିଲା ଏକ ଭାରତବ୍ୟାପୀ ଇଂରେଜ ବିଦ୍ୱେଷୀ

ଷଡ଼ଯନ୍ତ୍ର । ଏଭଳି ଗୋପନୀୟତା ସହକାରେ ସମସ୍ତ ଷଡ଼ଯନ୍ତ୍ର କାର୍ଯ୍ୟକାରୀ କରାଗଲା ଯେ, ଇଂରେଜଶକ୍ତି ତ ଦୂରର କଥା ବିଠୁର ରାଜପ୍ରାସାଦର ସାଧାରଣ ଅଧିବାସୀମାନେ ମଧ୍ୟ ତାହା ଘୁଣାକ୍ଷରେ ଜାଣି ପାରି ନଥିଲେ ।

ଇଂରେଜ ଶିବିରମାନଙ୍କରେ ଗଢ଼ାହେଲା ବିଦ୍ରୋହୀ ସୈନ୍ୟବାହିନୀ, ଭାରତୀୟ ସିପାହୀମାନଙ୍କ ଅନ୍ତରରେ ଢାଳି ଦିଆଗଲା ଅସନ୍ତୋଷ ଓ ଇଂରେଜ ବିଦ୍ୱେଷର ବହ୍ନି । ବୁଦ୍ଧିମାନ୍ ଚନ୍ଦନ ହଜୁରୀଙ୍କୁ ସବୁ କଥା ଭଲଭାବରେ ଜଣା ନ ଗଲେ ହେଁ ଆଭାସରେ ସେ ଆଗାମୀ ଝଡ଼ର କଥା ବେଶ୍ ଅନୁମାନ କରି ପାରିଲେ ।

ବିଠୁରରେ ପହଞ୍ଚିବାର ଦୁଇ ତିନିଦିନ ମଧ୍ୟରେ ହଜୁରୀ ନାନା ସାହେବଙ୍କ ସହିତ ଦୁଇଥର ଦେଖାକରି ସାରିଲେଣି; କିନ୍ତୁ ସେତେବେଳଯାଏଁ ନିଜର ଆସିବାର ଅଭିପ୍ରାୟଟି ନାନା ସାହେବଙ୍କୁ ଜଣାଇ ନ ଥାନ୍ତି । ତୃତୀୟଥର ସାକ୍ଷାତ ଘଟିଲା ରାଜପ୍ରାସାଦସ୍ଥ ଭବାନୀ ମନ୍ଦିରରେ, ନିହାତି ନିକାଞ୍ଚନ ସ୍ଥାନରେ । ଚନ୍ଦନ ହଜୁରୀ ନିଜର ଅଭିପ୍ରାୟ ବ୍ୟକ୍ତ କରିବାର ଉଦ୍ଦେଶ୍ୟରେ କହିଲେ- "ପେଶବା ! ଆପଣଙ୍କ ମହତ୍‌କାର୍ଯ୍ୟରେ ମୁଁ ଜଣେ ସହାୟକ ହେବାକୁ ଇଚ୍ଛୁକ । ଏଥିଲାଗି ଆପଣଙ୍କର ଆଦେଶ ଓ ପରାମର୍ଶ ମୁଁ ଲୋଡୁଛି ।"

ତୀର୍ଥଗୁରୁ (ଚନ୍ଦନ ହଜୁରୀ)ଙ୍କର କଥା ଶୁଣି ନାନାସାହେବ ଆଶ୍ଚର୍ଯ୍ୟ ହେବା ସଙ୍ଗେସଙ୍ଗେ ବିଚଳିତ ହୋଇ ପଡ଼ିଲେ । ତାଙ୍କର ସନ୍ଦେହ ହେଲା, ବୋଧହୁଏ ସମସ୍ତ ଷଡ଼ଯନ୍ତ୍ରଟି ଆଉ ଗୋପନୀୟ ନାହିଁ; କାରଣ ତାହା ହୋଇଥିଲେ ଚନ୍ଦନ ହଜୁରୀ ଜାଣନ୍ତେ କିପରି ? କିଛି ବୁଝି ନ ପାରିବାର ଭାବ ପ୍ରକାଶ କରି ନାନାସାହେବ କହିଲେ- "ତୀର୍ଥଗୁରୁଦେବ ! ବର୍ତ୍ତମାନ ମୁଁ ରାଜ୍ୟହୀନ, କପର୍ଦ୍ଦକ ଶୂନ୍ୟ ଏବଂ ରାଜଶକ୍ତିର ଦୟାରୁ ବଞ୍ଚିତ ଏକ ସାମାନ୍ୟ ଭାରତୀୟ ମାତ୍ର । ମୁଁ ବା କ'ଣ ମହତ୍ କାର୍ଯ୍ୟ କରିପାରେ । ଆପଣ ବୋଧହୁଏ କୌଣସି ଭ୍ରମଧାରଣାବଶତଃ ମୋତେ ଏଭଳି କଥା କହୁଛନ୍ତି ।"

ଚନ୍ଦନ ହଜୁରୀ ଦେଖିଲେ ନାନାସାହେବ ତାଙ୍କୁ ବିଶ୍ୱାସ କରୁନାହାନ୍ତି । ତେଣୁ ନାନାସାହେବଙ୍କର ସନ୍ଦେହ ଦୂର କରିବା ଲାଗି ସେ ଯାହା ଦେଖିଛନ୍ତି, ଶୁଣିଛନ୍ତି ଓ ଧାରଣା କରିଛନ୍ତି ତାହା ଆଦ୍ୟପ୍ରାନ୍ତ ବର୍ଣ୍ଣନା କରିଗଲେ । ସବୁ ବର୍ଣ୍ଣନା କରିବା ପରେ ଚନ୍ଦନ ହଜୁରୀ କହିଲେ- "ପେଶବା ! ମା ଭବାନୀଙ୍କ ସମ୍ମୁଖରେ ପ୍ରତିଜ୍ଞା କରି କହୁଛି କୌଣସି ଅସତ୍ ଉଦ୍ଦେଶ୍ୟ ନେଇ ମୁଁ ଆପଣଙ୍କ ନିକଟକୁ ଆସିନାହିଁ । ଭାରତର ସ୍ୱାଧୀନତା ମୁଁ ମଧ୍ୟ କାମନା କରେ ଏବଂ ଯେତେବେଳେ ଆପଣ ଏହି ମହତ୍ କାର୍ଯ୍ୟର ନେତୃତ୍ୱ ନେଇଛନ୍ତି, ସେତେବେଳେ ଆପଣଙ୍କୁ ସବୁ ପ୍ରକାରରେ ସାହାଯ୍ୟ କରିବା ମୋର ପ୍ରଧାନ କର୍ତ୍ତବ୍ୟ ବୋଲି ମୁଁ ମନେ କରେ । ଝାନ୍‌ସୀର ଅବସ୍ଥା, ବିଶେଷକରି ବିଧବା ରାଣୀ ଲକ୍ଷ୍ମୀ ବାଈଙ୍କ

ଲାଗି ମୁଁ ଭାରି ଚିନ୍ତିତ । ଝାନ୍‌ସୀ ହିଁ ବର୍ତ୍ତମାନ ମୋର ପ୍ରଧାନ କର୍ମକ୍ଷେତ୍ର । ମୋତେ କ'ଣ କରିବାକୁ ଆପଣ ଆଦେଶ ଦେଉଛନ୍ତି ?"

ତୀର୍ଥଗୁରୁଙ୍କର ଆନ୍ତରିକତାରେ ବିପ୍ଳବୀ ଶିରୋମଣି ନାନାସାହେବଙ୍କର ବିଶ୍ୱାସ ଜନ୍ମିଲା । ଚନ୍ଦନ ହକୁରୀଙ୍କ ବୁଦ୍ଧିମତ୍ତାରେ ସେ ଖୁସି ହୋଇ କହିଲେ- "ଦେଖନ୍ତୁ ତୀର୍ଥଗୁରୁ ମହାଶୟ ! ଆଗାମୀ ବିଦ୍ରୋହ କେବଳ ଦେଶୀୟ ନୃପତିମାନଙ୍କର ଇଂରେଜ ସରକାର ବିରୋଧରେ ନୁହେଁ କି ହିନ୍ଦୁମାନଙ୍କ ବିଦେଶୀ ଶକ୍ତି ବିରୋଧରେ ନୁହେଁ । ଏହା ହେବ ଭାରତୀୟ ଜନତାର ସଂଗଠିତ ଐକ୍ୟବଦ୍ଧ ବିଦ୍ରୋହ । ଆଗାମୀ ବିଦ୍ରୋହରେ ବିଦ୍ରୋହୀମାନଙ୍କ ମଧ୍ୟରେ ଜାତି ଧର୍ମ, ବର୍ଣ୍ଣ ଇତ୍ୟାଦିର କୌଣସି ବିଭେଦ ରହିବ ନାହିଁ । ଆପଣଙ୍କର କର୍ତ୍ତବ୍ୟ ହେବ, ଜାତି ଧର୍ମ ନିର୍ବିଶେଷରେ ଝାନସୀର ଜନଶକ୍ତିକୁ ଆଗାମୀ ମୁକ୍ତିଯୁଦ୍ଧ ଲାଗି ସଂଗଠିତ କରିବା । ଏହି ମୁକ୍ତି ଯୁଦ୍ଧବେଳେ ଇଂରାଜ ଅଧିକୃତ ଝାନ୍‌ସୀ ଦୁର୍ଗରେ ବିଦ୍ରୋହ ସୁନିଶ୍ଚିତ । ଭାରତୀୟ ସିପାହୀମାନେ ଇଂରେଜ ପ୍ରଭୁତ୍ୱ ବିରୋଧରେ ନିଶ୍ଚୟ ଆସି ଧାରଣ କରିବେ; କିନ୍ତୁ କେବଳ ସୈନ୍ୟଙ୍କର ବିଦ୍ରୋହରେ କୌଣସି ମୁକ୍ତିସଂଗ୍ରାମ ସଫଳ ହୋଇପାରେ ନାହିଁ । ସୈନ୍ୟବାହିନୀର ସାଫଲ୍ୟ ନିର୍ଭରକରେ ଜନସାଧାରଣଙ୍କର ସାହଚର୍ଯ୍ୟ ଉପରେ । ସେହି ଦୃଷ୍ଟିରୁ ଆପଣ ଜନଶକ୍ତିକୁ ସଂଗଠିତ ଓ ଉଦ୍‌ବୁଦ୍ଧ କରିବେ । ଆପଣଙ୍କର ଦ୍ୱିତୀୟ କାର୍ଯ୍ୟ ହେବ ଝାନ୍‌ସୀ ରାଣୀଙ୍କର ସୈନ୍ୟ ସଂଖ୍ୟା ବୃଦ୍ଧି କରିବା; କିନ୍ତୁ ଯଦି ହଠାତ୍ ସୈନ୍ୟ ବୃଦ୍ଧି କରାଯାଏ, ତେବେ ଇଂରେଜ ଶକ୍ତିର ସନ୍ଦେହ ହେବା ସ୍ୱାଭାବିକ ଏବଂ ଫଳରେ ବିପ୍ଳବ ପଣ୍ଡ ହୋଇଯାଇ ପାରେ । ତେଣୁ ଝାନ୍‌ସୀକୁ ଫେରି ଆପଣ ସ୍ୱ ପ୍ରଭାବ ବଳରେ ଇଂରେଜ-ଶାସକଙ୍କ ମନରେ ଏଭଳି ଏକ ବିଶ୍ୱାସ ଜନ୍ମାନ୍ତୁ, ଯାହାଫଳରେ ସୈନ୍ୟବୃଦ୍ଧି କାର୍ଯ୍ୟକୁ ସେମାନେ ଆଦୌ ସନ୍ଦେହ କରିବେ ନାହିଁ । ଆପଣଙ୍କର ତୃତୀୟ ଓ ପ୍ରଧାନ କର୍ତ୍ତବ୍ୟ ବିଷୟରେ ମୁଁ ଆପଣଙ୍କୁ ଚେତାଇ ଦେଉଛି । ଦିଲ୍ଲୀରୁ ସଙ୍କେତ ନ ପାଇବା ପର୍ଯ୍ୟନ୍ତ ଯେପରି ଝାନ୍‌ସୀରେ ବିଦ୍ରୋହ ଆରମ୍ଭ ନ ହୁଏ ।"

ମନରେ ବିରାଟ ଆଶା, ହୃଦୟରେ ବିପୁଳଶକ୍ତି ଘେନି ଚନ୍ଦନ ହକୁରୀ ଫେରିଲେ ଝାନ୍‌ସୀ । ଇଂରେଜ ଶାସନର ଚାପରେ ଝାନ୍‌ସୀର ଅଧିବାସୀଗଣ ସେତେବେଳକୁ ମ୍ରିୟମାଣ । ରାଣୀ ଲକ୍ଷ୍ମୀବାଈଙ୍କର ଅବସ୍ଥା ଆହୁରି ଶୋଚନୀୟ । ପ୍ରଧାନମନ୍ତ୍ରୀ ଲକ୍ଷ୍ମଣ ରାଓ ଓ ଅନ୍ୟାନ୍ୟ କେତେକ ଅମାତ୍ୟ ରାଣୀଙ୍କଠାରୁ ଇଂରେଜ ରେସିଡେଣ୍ଟଙ୍କୁ ତୋଷଣ କରିବାରେ ଅଧିକ ତତ୍‌ପର ।

ବୁଦ୍ଧିମାନ୍ ଚନ୍ଦନ ହକୁରୀ ଦେଖିଲେ, ଝାନ୍‌ସୀର ଅବସ୍ଥା ତାଙ୍କର ନୂତନ କାର୍ଯ୍ୟ ଆରମ୍ଭ କରିବା ପକ୍ଷରେ ସମ୍ପୂର୍ଣ୍ଣ ଅନୁକୂଳ । ଫେରିବାର ପ୍ରଥମ ଦିନ ରାତ୍ରିରେ ରାଣୀ ଓ

ଚନ୍ଦନ ହଜୁରୀଙ୍କ ମଧ୍ୟରେ ହେଲା ଗୁପ୍ତ ମନ୍ତ୍ରଣା । ହଜୁରୀଙ୍କଠାରୁ ଅନୁପୂର୍ବିକ ସମସ୍ତ ଘଟଣା ଓ ତାଙ୍କର (ହଜୁରୀ) ପରିକଳ୍ପନାମାନ ଶୁଣି ଲକ୍ଷ୍ମୀବାଈଙ୍କର ଆନନ୍ଦର ଆଉ ସୀମା ରହିଲା ନାହିଁ । ଚନ୍ଦନ ହଜୁରୀ ରାଣୀଙ୍କୁ ନୂତନ କାର୍ଯ୍ୟର ଗୁରୁଦାୟିତ୍ୱ ଓ ସମସ୍ତ ବିପଦ କଥା ଜଣାନ୍ତେ ରାଣୀ କହିଲେ- "ତୀର୍ଥଗୁରୁ ମହାଶୟ ! ଆପଣ କେବଳ ମୋର ଧର୍ମଗୁରୁ ନୁହନ୍ତି, ଆଜିଠାରୁ ହେଲେ ଗୁରୁ ଓ ପ୍ରଧାନ ସହାୟ । ଆପଣଙ୍କ ନିର୍ଦ୍ଦେଶ ଅନୁଯାୟୀ ମୁଁ ଏଣିକି କାର୍ଯ୍ୟ କରିବି ।"

ତହିଁ ଆରଦିନଠାରୁ ରାଣୀ, ମନ୍ତ୍ରୀ ଲକ୍ଷ୍ମଣ ରାଓ ଓ ଅନ୍ୟାନ୍ୟ କେତେକ ଅମାତ୍ୟଙ୍କର ଇଂରେଜ ରେସିଡେଣ୍ଟଙ୍କୁ ତୋଷଣ କାର୍ଯ୍ୟରେ ପରୋକ୍ଷରେ ସାହାଯ୍ୟ କଲେ । ଫଳରେ ବିଦେଶୀ ଶାସନ ଝାନ୍‌ସୀବାସୀଙ୍କ ପକ୍ଷରେ ଦୁର୍ବିସହ ହୋଇ ଉଠିଲା । ଦେଶବାସୀଙ୍କର ଏହି ବିତୃଷ୍ଣାରେ ହଜୁରୀ ମହାଶୟ ମଧ୍ୟ ଗୁପ୍ତ ଇନ୍ଧନ ଯୋଗାଇଲେ । ଫଳରେ ଦିନେ ଉତ୍‌ପୀଡ଼ିତ ଦେଶବାସୀ ହଠାତ୍ ଆକ୍ରମଣ କଲେ ଝାନ୍‌ସୀ ରାଣୀଙ୍କ ରାଜପ୍ରସାଦ । ଇଂରେଜ ସୈନ୍ୟ ସାହାଯ୍ୟରେ ଏହି ପ୍ରଥମ ବିଦ୍ରୋହକୁ ଅବଶ୍ୟ ଦମନ କରାଗଲା; କିନ୍ତୁ ଏହି ଘଟଣା ହଜୁରୀ ମହାଶୟଙ୍କୁ ନିଜ ଅଭୀଷ୍ଟ ସିଦ୍ଧି କରିବାରେ ହେଲା ପ୍ରଧାନ ସହାୟକ ।

ରାଣୀଙ୍କର ସନ୍ୟବାହିନୀ ବୃଦ୍ଧି କରିବାର ଏହା ହିଁ ହେଉଛି ପ୍ରକୃଷ୍ଟ ସମୟ । ଭବିଷ୍ୟତ ଆକ୍ରମଣ ବିରୋଧରେ ନିଜକୁ ସମର୍ଥ ଓ ଶକ୍ତିଶାଳୀ କରିବାକୁ ରାଣୀ ନିଜର ସୈନ୍ୟବାହିନୀ ବୃଦ୍ଧି କରିବାର ପରିକଳ୍ପନା ଇଂରେଜ ରେସିଡେଣ୍ଟ କ୍ୟାପଟେନ୍ ସ୍କୀନଙ୍କୁ ଜଣାଇଲେ ।

କ୍ୟାପଟେନ୍ ସ୍କୀନ ଭାବିଲେ ମନ୍ଦ କ'ଣ । ଭାରତୀୟମାନଙ୍କର ଆତ୍ମକଳହରେ ଇଂରେଜଙ୍କର ଲାଭ; ତେଣୁ ଏହା ପଛରେ ହଜୁରୀ ମହାଶୟଙ୍କର ଯେ କେତେବଡ଼ ଷଡ଼ଯନ୍ତ୍ର ରହିଛି, ସେ ତାହା ଘୁଣାକ୍ଷରେ ସୁଦ୍ଧା ଅନୁମାନ କରିପାରିଲେ ନାହିଁ । ସୈନ୍ୟବାହିନୀ ବୃଦ୍ଧି କରିବାକୁ ଅନୁମତି ଅତି ସହଜରେ ମିଳିଗଲା । ନିଯୁକ୍ତି କରିବାର ସମସ୍ତ ଦାୟିତ୍ୱ ନେଲେ ସ୍ୱୟଂ ରାଣୀ । ଅବଶ୍ୟ ହଜୁରୀ ମହାଶୟଙ୍କ ନିର୍ଦ୍ଦେଶ ପରୋକ୍ଷରେ ଥାଇ କାମ କରୁଥିଲା ।

ହିନ୍ଦୁଧର୍ମର ପ୍ରଧାନ ଧ୍ୱଜାଧାରୀ ମହାରାଷ୍ଟ୍ର ଶକ୍ତିର ଜଣେ ଶ୍ରେଷ୍ଠ ସ୍ତମ୍ଭସ୍ୱରୂପା ଏହି ବିଧବା ରମଣୀ ନିଜର ନବଗଠିତ ବାହିନୀର ପ୍ରଧାନ ସେନାପତି ରୂପେ ନିଯୁକ୍ତ କଲେ ମୁସଲମାନ ଯୋଦ୍ଧା କୁୟାର ଖୋଦା ବକ୍‌ସଙ୍କୁ, ଗୋଲନ୍ଦାଜ ବାହିନୀର ସର୍ବାଧ୍ୟକ୍ଷ ରୂପେ ନିଯୁକ୍ତ ହେଲେ ସେ ଯୁଗର ଶ୍ରେଷ୍ଠ ଗୋଲନ୍ଦାଜ ଅନ୍ୟ ଏକ ମୁସଲମାନ ଗୋଲାମ ଗୌସଚ । ପୁରୁଣା କମାଣ ସବୁର ମରାମତି ଓ ନୂଆ କମାଣ ତିଆରି ହେଲା ଦକ୍ଷ

କାରିଗରଙ୍କ ହାତରେ । ସେହି ସ୍ୱଚ୍ଛ କମାଣ ମଧ୍ୟରୁ କେତୋଟିର ନାଁ ହେଉଛି ଘନ ଗଜ, ମହାକାଳୀ, ଭବାନୀଶଙ୍କର, ଶତ୍ରୁସଂହାର । ଏକ ପତାକା ତଳେ ଛିଡ଼ା ହୋଇ ଲଢ଼େଇ କରିବାକୁ ହିନ୍ଦୁ ବା ମୁସଲମାନ କାହାରି ପକ୍ଷରୁ କାହିଁ କିଛି ଆପତ୍ତି ହୋଇ ନଥିଲା । ସିପାହୀ ବିଦ୍ରୋହର ହୃତପିଣ୍ଡ ମହାରାଷ୍ଟ୍ରୀୟ ହିନ୍ଦୁ ନାନାସାହେବ ମୋଗଲ ବାଦଶାହା ବାହାଦୁର ସାହଙ୍କର ଆନୁଗତ୍ୟ ସ୍ୱୀକାର କରି ନବଭାରତର ପ୍ରଥମ ଗଣ ଅଭ୍ୟୁଦୟର କଲେ ଶୁଭାରମ୍ଭ । ଏହି ଜାତୀୟ ଐକ୍ୟବୋଧ ନବଭାରତକୁ ସିପାହୀ ବିଦ୍ରୋହର ଅମର ଦାନ ।

ସୈନ୍ୟ ସଂଗଠନର କାର୍ଯ୍ୟ ରାଣୀଙ୍କ ଉପରେ ନ୍ୟସ୍ତ କରି ଚନ୍ଦନ ହଜୁରୀ ଚାଲିଲେ ଝାନ୍‌ସୀର ଗ୍ରାମାଞ୍ଚଳ ଭ୍ରମଣ କରିବାକୁ । ଉଦ୍ଦେଶ୍ୟ ହେଲା ଗୋପନରେ ଆଗାମୀ ବିପ୍ଳବର ବୀଜ ଚାରିଆଡ଼େ ବୁଣି ଦେବା; କିନ୍ତୁ ରାଣୀଙ୍କ ଛଡ଼ା ଅନ୍ୟ ସମସ୍ତେ ଜାଣିଲେ ହଜୁରୀ ଚାଲିଛନ୍ତି ଇଲାକା ପରିଦର୍ଶନ କରି ।

ସମସ୍ତ ଉତ୍ତରଭାରତର ବାୟୁମଣ୍ଡଳ ଏକ ଅସ୍ୱସ୍ତିକର ଆବେଶରେ ପରିପୂର୍ଣ୍ଣ । ବିପ୍ଳବ ଆଗତ ପ୍ରାୟ । କେହି ସଠିକ୍ ଭାବରେ ଜାଣନ୍ତି ନାହିଁ, ଏ ବିପ୍ଳବ କାହିଁକି, କେଉଁଠାରୁ ବା କେତେବେଳେ ଆରମ୍ଭ ହେବ ।

ବିପ୍ଳବ ଆସିଲା ହଠାତ୍; ତେବେ ବିପ୍ଳବର ଅଧିନାୟକଙ୍କର ନିର୍ଦ୍ଦେଶ ମତେ ନୁହେଁ । ଦିଲ୍ଲୀରୁ ବିପ୍ଳବର ସଙ୍କେତ ଆସିବା ପୂର୍ବରୁ ବ୍ୟାରାକ୍‌ପୁରର ସୈନ୍ୟ ଶିବିରରେ ଜଳି ଉଠିଲା ଦାବାନଳ । ବ୍ୟାରାକ୍‌ପୁର ବିପ୍ଳବ କେନ୍ଦ୍ରର ଜଣେ ପ୍ରଧାନ ନେତା ସିପାହୀ ମଙ୍ଗଳ ପାଣ୍ଡେ ଦଳପତିଙ୍କର ନିର୍ଦ୍ଦେଶକୁ ଅମାନ୍ୟ କରି ଦିନେ ହଠାତ୍ ଘୋଷଣା କଲେ ବିପ୍ଳବ । ଉନ୍ମୁକ୍ତ ଅସି ହସ୍ତରେ ମଙ୍ଗଳ ପାଣ୍ଡେ ସେଦିନ ଶିବିରରେ ପରେଡ୍ ପଡ଼ିଆରେ ଚିତ୍କାର କରିଉଠିଲେ- "ବିଦେଶୀ ଇଂରେଜକୁ ହତ୍ୟାକର ।"

ମଙ୍ଗଳ ପାଣ୍ଡେଙ୍କର ଅସମୟୋଚିତ ଉତ୍ତେଜନା ଯୋଗୁଁ ଯେଉଁ ବହ୍ନି ଏତେଦିନ ପର୍ଯ୍ୟନ୍ତ ଚାପିହୋଇ ରହିଥିଲା, ତାହା ବ୍ୟାପିଗଲା ଭାରତ ସାରା ବିକ୍ଷିପ୍ତ ଭାବରେ । ନାନା ସାହେବଙ୍କର ସଂଗଠିତ ଯୋଜନା ପଣ୍ଡ ହୋଇଗଲା । "ଫିରିଙ୍ଗ୍‌ମାର" ଧ୍ୱନି ସମଗ୍ର ଉତ୍ତର ଭାରତରେ ଆକାଶ ପବନକୁ ଥରାଇ ଦେଲା । ଚାହୁଁଚାହୁଁ ବିପ୍ଳବର ଢେଉ ଆସି ବାଜିଲା ଝାନ୍‌ସୀରେ । ଆରମ୍ଭ ହେଲା ହତ୍ୟାର ତାଣ୍ଡବ ଲୀଳା । ଉତ୍ତାଳ ସମୁଦ୍ରର ଢେଉ ଅଛାଡ଼ି ହୋଇ ପଡ଼ିଲା ଭୂଖଣ୍ଡ ଉପରେ । ଭାରତୀୟ ସିପାହୀମାନେ ରାସ୍ତାଘାଟରେ ଯେଉଁଠାରେ ଇଂରେଜ ଦେଖିଲେ ନିର୍ମ୍ମମ ଭାବରେ ହତ୍ୟା କଲେ । କ୍ରୁଦ୍ଧ ଭାରତୀୟ ସିପାହୀଗଣ ଆକ୍ରମଣକଲେ ଇଂରେଜ ଅଧିକୃତ ଝାନ୍‌ସି ଦୁର୍ଗ ।

ବିପ୍ଳବର ଆକସ୍ମିକ ଆରମ୍ଭ ରାଣୀଙ୍କୁ ଚକିତ କରିଦେଲା । ରାଣୀଙ୍କ ନିର୍ଦ୍ଦେଶକୁ

ଅପେକ୍ଷା ନ କରି ଝାନ୍‌ସୀର ସୈନ୍ୟମାନେ ମାତିଲେ ତାଣ୍ଡବ ଲୀଳାରେ । ଦୁର୍ଗ ମଧ୍ୟରେ ଥାଇ ଇଂରେଜ ସେନାପତି କ୍ୟାପ୍‌ଟେନ୍ ସ୍କୀନ୍ ଦେଖିଲେ ଅବସ୍ଥା ଶୋଚନୀୟ । ଦୁର୍ଗ ବେଶିଦିନ ଅବରୁଦ୍ଧ ହେଲେ ଖାଦ୍ୟାଭାବ ଘଟିବା ସୁନିଶ୍ଚିତ । ରାଣୀଙ୍କ ନିକଟକୁ କେତେଜଣ ଦେଶୀ ସୈନ୍ୟଙ୍କୁ ଛଦ୍ମବେଶରେ ପଠାଇଲେ ସାହାଯ୍ୟ ଲାଗି; କିନ୍ତୁ ପଥମଧ୍ୟରେ ଇଂରାଜ ଦୂତଗଣ ହତ ହେଲେ କ୍ରୁଦ୍ଧ ଝାନ୍‌ସୀ ସୈନ୍ୟଙ୍କ ହସ୍ତରେ । ନିରୁପାୟ ଇଂରେଜ ସେନାପତି ଆତ୍ମସମର୍ପଣସୂଚକ ଶ୍ୱେତପତାକା ଉଡ଼ାଇ ଦେଲେ ଝାନ୍‌ସୀ ଦୁର୍ଗ ଉପରେ । ଦୁର୍ଗର ଦ୍ୱାର ହେଲା ଉନ୍ମୁକ୍ତ । ବିଦ୍ରୋହୀ ସିପାହୀମାନେ ସମୁଦ୍ରର ଲହରି ପରି ମାଡ଼ିଗଲେ ଦୁର୍ଗ ଭିତରକୁ । ଶ୍ୱେତ ପତାକାକୁ ମର୍ଯ୍ୟାଦା ଦେଉଛି କିଏ, ଚାଲିଲା ନିର୍ମ୍ମମ ହତ୍ୟା । ଦୁର୍ଗାଧିକାର କାର୍ଯ୍ୟ ଶେଷ ହେଲାବେଳକୁ ଦେଖାଗଲା, ଜଣେ ହେଲେ ଇଂରେଜ କିମ୍ବା ତାଙ୍କ ଅନୁଚର ଆଉ ଜୀବିତ ନାହାନ୍ତି ।

ନିଜ ସୈନ୍ୟମାନଙ୍କର ଏହି ତାଣ୍ଡବ ଲୀଳା ରାଣୀଙ୍କ ମନରେ ଦେଇଥିଲା ଦୁଃଖ; କିନ୍ତୁ ପ୍ରଳୟର ଝଞ୍ଜାକୁ ରୋଧ କରିବା ବାତୁଳତା ବ୍ୟତୀତ ଆଉ କିଛି ନୁହେଁ ଜାଣି ରାଣୀ ନୀରବ ରହିବାକୁ ବାଧ୍ୟ ହେଲେ । ଜରୁରୀ ଡାକରା ପାଇ ଚନ୍ଦନ ହଜୁରୀ ରାଜପ୍ରାସାଦ ସମ୍ମୁଖରେ ପହଞ୍ଚି ଦେଖନ୍ତି ଯେ, ଝାନ୍‌ସୀର ବିରାଟ ସମସ୍ତ ଜନତା ରାଜପ୍ରାସାଦ ସମ୍ମୁଖରେ ଦଣ୍ଡାୟମାନ । ଉତ୍‌ଫୁଲ୍ଲ ଜନତା ଜୟୋଲ୍ଲାସରେ ଘୋଷଣା କରୁଛି-

"ମୁଲ୍‌କ ଖୋଦାକା, ମୁଲ୍‌କ ବାଦ୍‌ଶାକା,

ଅମ୍ମାଲ୍ ରାଣୀ ଲକ୍ଷ୍ମୀବାଈକା"......

ଅର୍ଥାତ୍-

"ପୃଥିବୀ ଭଗବାନଙ୍କର; ଭାରତ ସାମ୍ରାଜ୍ୟ ବାଦଶାହଙ୍କର- ଏହି ରାଜ୍ୟର ଅଧିନାୟିକା ହେଲେ ରାଣୀ ଲକ୍ଷ୍ମୀ ବାଈ ।"

ରାଣୀ ରାଜପ୍ରସାଦର ଅଳିନ୍ଦରେ ଛିଡ଼ା ହୋଇ ଜନତାକୁ ଅଭିବାଦନ କରୁଛନ୍ତି । ପ୍ରାସାଦ ଉପରକୁ ଅନାଇ ଦେଖନ୍ତି ତ ଛତ୍ରପତି ଶିବାଜୀଙ୍କ ସର୍ବଜୟୀ 'ଭାଗୱା ଝଣ୍ଡା' ସଦର୍ପରେ ଉଡୁଛି । ଏହି ଦୃଶ୍ୟ ଚନ୍ଦନ ହଜୁରୀଙ୍କ ମନରେ ପୁଲକ ଆଣି ଦେଇଥିଲା କ୍ଷଣକ ପାଇଁ । ହଜୁରୀ ମହାଶୟ ବୁଝି ପାରିଥିଲେ ଏହା ସଂଗ୍ରାମର ଶେଷ ନୁହେଁ, ଆରମ୍ଭ ମାତ୍ର । ସମ୍ମୁଖରେ ରହିଛି ବିସ୍ତୀର୍ଣ୍ଣ ଦୁସ୍ତର ପଥ । ବିପ୍ଳବର ସମସ୍ତ ଶକ୍ତିକୁ ଏକତି ଓ ସଂଗଠିତ କରିବାର ଏହା ହିଁ ହେଉଛି ପ୍ରକୃଷ୍ଟ ସମୟ ।

ସେଦିନ ରାତିରେ ନଅରର ମନ୍ତ୍ରଣାକକ୍ଷରେ ବସିଲା ଏକ ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରଣା

ସଭା । ରାଣୀଙ୍କ ସମେତ ମନ୍ତ୍ରଣାକକ୍ଷରେ ଉପସ୍ଥିତ ପ୍ରଧାନ ମନ୍ତ୍ରୀ ଲକ୍ଷ୍ମଣ ରାଓ, ପ୍ରଧାନ ସେନାପତି କୁୟାର ଖୋଦା ବକ୍ସ୍, ପ୍ରଧାନ ଗୋଲନ୍ଦାଜ ଗୋଲାମ ଗୌସ, ଚନ୍ଦନ ହଜୁରୀ ଓ ଅନ୍ୟାନ୍ୟ ମୁଖ୍ୟ ସର୍ଦ୍ଦାରଗଣ । କକ୍ଷର ନୀରବତା ଭଙ୍ଗକରି ଚନ୍ଦନ ହଜୁରୀ ପ୍ରଥମେ ଆରମ୍ଭ କଲେ- "ଝାନ୍‌ସୀର ଆଜି ମହା ଶୁଭ ଦିନ । ବିଦେଶୀ ଶକ୍ତି ଆଜି ପରାଜିତ ଏବଂ ବିତାଡ଼ିତ; କିନ୍ତୁ ଏଥିଯୋଗୁଁ ଆମ୍ଭମାନଙ୍କର ବିଶେଷ ଉତ୍‌ଫୁଲ୍ଲ ହେବାର କିଛି ନାହିଁ । ସମଗ୍ର ଭାରତ ବର୍ତ୍ତମାନ ଏକ ବିଷମ ସନ୍ଧିକ୍ଷଣରେ ଉପସ୍ଥିତ । ଆଜିଠାରୁ ଝାନ୍‌ସୀକୁ ଆହୁରି ଶକ୍ତି ସଂଗ୍ରହ କରିବାକୁ ପଡ଼ିବ; କାରଣ ବିଦେଶୀ ଶକ୍ତି ସମ୍ପୂର୍ଣ୍ଣରୂପେ ପରାଜିତ ବୋଲି ମୁଁ ମନେ କରେ ନାହିଁ । ପୁନର୍ଗଠିତ ହୋଇ ସେମାନଙ୍କର ପ୍ରତି ଆକ୍ରମଣ କରିବାର ସମ୍ଭାବନା ପୂରାପୂରି ରହିଛି । ଏହା ଛଡ଼ା ଆଉ ଏକ ବିଶେଷ ଦିଗ ପ୍ରତି ଆମ୍ଭମାନଙ୍କୁ ମୂଳରୁ ସତର୍କ ରହିବାକୁ ହେବ, ତାହା ହେଉଛି ଗୃହ ଶତ୍ରୁ । ବିଭୀଷଣ ବାହିନୀର ଅଭ୍ୟୁଦୟ ଭାରତର ଅସ୍ଥିମଜ୍ଜାଗତ କହିଲେ ଅତ୍ୟୁକ୍ତି ହେବ ନାହିଁ ଏବଂ ଏହି ଗୃହ ଶତ୍ରୁଙ୍କଦ୍ୱାରା ଝାନ୍‌ସୀର ଅନିଷ୍ଟ ହେବାର ସମ୍ଭାବନା ପୂରାମାତ୍ରାରେ ରହିଛି । ତେଣୁ ସବୁ ଦିଗ ପ୍ରତି ଦୃଷ୍ଟି ରଖି ଆମ୍ଭମାନଙ୍କୁ ବର୍ତ୍ତମାନଠାରୁ ଶକ୍ତି ସଂଗ୍ରହ କରିବାକୁ ପଡ଼ିବ ।"

ହଜୁରୀ ମହାଶୟଙ୍କର ବକ୍ତବ୍ୟଟି ଖାଲି ଯେ ହୃଦୟଗ୍ରାହୀ ହୋଇଥିଲା ତାହା ନୁହେଁ, ଉପସ୍ଥିତ ସମସ୍ତେ ସେହି ଅନୁସାରେ କାର୍ଯ୍ୟ କରିବାକୁ ଶପଥ ଗ୍ରହଣ କରିଥିଲେ ।

ଗୃହଶତ୍ରୁଙ୍କ ବିରୋଧରେ ଚନ୍ଦନ ହଜୁରୀଙ୍କ ଭବିଷ୍ୟତ ବାଣୀ ଅଚିରେ ଫଳିଲା । ଭାରତର ଦୁର୍ଭାଗ୍ୟ ଯେ ଦେଶର ଅଧିକାଂଶ ବୃହତ୍ତର ସଂଗ୍ରାମ ନଷ୍ଟ ହୋଇଯାଇଛି କେତେକ ସ୍ୱାର୍ଥାନ୍ଧ ବ୍ୟକ୍ତିଙ୍କ ବ୍ୟକ୍ତିଗତ ଲାଳସା ଯୋଗୁଁ । ଦେଶବ୍ୟାପୀ ଦୁର୍ଯ୍ୟୋଗ ବେଳେ ସେମାନେ ନିଜର ଲାଭ ଉଠାଇବାକୁ କେବେ ହେଲେ ପଛଘୁଞ୍ଚା ଦେଇନାହାନ୍ତି । ଅତୀତରେ ସେମାନେ ଥିଲେ, ବର୍ତ୍ତମାନ ମଧ୍ୟ ସେମାନେ ଅଛନ୍ତି ।

ଅଳ୍ପ ଦିନ ମଧ୍ୟରେ ରାଣୀ ଲକ୍ଷ୍ମୀବାଈଙ୍କୁ ଜଣେ ଦୁର୍ବଳ ସ୍ତ୍ରୀ ଲୋକ ଭାବି ଦୁଇଜଣ ସ୍ୱାର୍ଥାନ୍ଧ ବ୍ୟକ୍ତି ଝାନ୍‌ସୀ ଦଖଲ କରିବାକୁ ଉଦ୍ୟୋଗୀ ହେଲେ । ସେଥି ମଧ୍ୟରୁ ଜଣେ ହେଉଛନ୍ତି ଗଙ୍ଗାଧର ରାଓଙ୍କର ଦୂର ସମ୍ପର୍କୀୟ ଆତ୍ମୀୟ ସଦାଶିବ ରାଓ ଓ ଅନ୍ୟ ଜଣକ ହେଲେ ତେହେରିର ନବାବ ନଥେ ଖାଁ; କିନ୍ତୁ ଦୁର୍ଦ୍ଧର୍ଷ ଝାନ୍‌ସୀ ବାହିନୀ ହାତରେ ସେମାନଙ୍କୁ ପରାଜୟର ଚରମ ଗ୍ଲାନି ବରଣ କରିବାକୁ ପଡ଼ିଥିଲା ।



# ଦୁର୍ଯୋଗ

ପ୍ରାୟ ଏକ ବର୍ଷ ପରେ । ସେତେବେଳକୁ ପଞ୍ଜାବ ବ୍ୟତୀତ ସମଗ୍ର ଉତ୍ତର ଭାରତ ବିପ୍ଳବୀମାନଙ୍କର ବିଜୟୋଲ୍ଲାସରେ ପୂରି ଉଠିଲାଣି । ବିଦ୍ରୋହର ପ୍ରଥମ ଧକ୍କାରେ ଇଂରେଜ ଶକ୍ତି ନିର୍ଯ୍ୟାତିତ । ପ୍ରତ୍ୟେକ ସହରରୁ ସେମାନେ ବହିଷ୍କୃତ; କିନ୍ତୁ ନିଜ ମଧ୍ୟରେ ସଂହତି ଅଭାବରୁ ବିଦ୍ରୋହୀମାନଙ୍କର ଜୟୋଲ୍ଲାସ ଅଳ୍ପକାଳ ମଧ୍ୟରେ ବନ୍ଦ ହୋଇଗଲା ।

ବିଚିତ୍ର ଏହି ଇଂରେଜ ଜାତି, ଅଦ୍ଭୁତ ଏମାନଙ୍କର କର୍ମଶକ୍ତି । ବିପଦ ଯେତେ ଘନେଇ ଆସେ ଇଂରାଜର କର୍ମଶକ୍ତି ବଢ଼େ ତାର ଦ୍ୱିଗୁଣ ବେଗରେ । ଯେଉଁଠାରେ ପରାଜୟ ଅନିର୍ବାର୍ଯ୍ୟ ବୋଲି ସାଧାରଣଙ୍କ ହତାଶ ହୋବର କଥା, ଠିକ୍ ସେହି ଘଡ଼ିସନ୍ଧବେଳେ ଇଂରେଜ ଥାଏ ଅବିଚଳ ଏବଂ ଆଶ୍ଚର୍ଯ୍ୟ ଭାବରେ ସେମାନେ ପରାଜୟକୁ ପରିଣତ କରନ୍ତି ଜୟରେ ।

ପ୍ରଥମ ଧକ୍କାରେ ବିପର୍ଯ୍ୟସ୍ତ ହୋଇ ସୁଦ୍ଧା ଇଂରାଜ ଶକ୍ତି ନିରୁତ୍ସାହିତ ହେବା ବଦଳରେ ଦିଗୁଣ ବେଗରେ ଶକ୍ତି ସଂଗଠନ କରିବାକୁ ଲାଗିଲେ । ତା'ପରେ ଯୁଦ୍ଧକୌଶଳ ଦୃଷ୍ଟିରୁ ଭାରତକୁ ଦୁଇଟି ଅଞ୍ଚଳରେ ବିଭକ୍ତ କରି ଇଂରେଜ ଶକ୍ତି ଦୁଇଜଣ ନିପୁଣ ସେନାପତି ସାର୍ ହିଉରୋଜ ଏବଂ ସାର କଲିନ୍ କ୍ୟାମ୍ପବେଲ୍‌ଙ୍କ ଉପରେ ଏହି ଦୁଇ ଅଞ୍ଚଳର ସୈନ୍ୟ ଚାଳନାର ଭାର ଦେଲେ । ଉତ୍ତର ଭାରତର ସୈନ୍ୟ ଚାଳନାର ଦାୟିତ୍ୱ ପଡ଼ିଲା ସାର୍ କଲିନ୍ କ୍ୟାମ୍ପବେଲଙ୍କ ଉପରେ ଏବଂ ଯମୁନା ଓ ବିନ୍ଧ୍ୟର ମଧ୍ୟବର୍ତ୍ତୀ ଅଞ୍ଚଳର ଦାୟିତ୍ୱ ପଡ଼ିଲା ସାର୍ ହିଉରୋଜଙ୍କ ଉପରେ ।

ବିଦ୍ରୋହୀମାନଙ୍କ ମଧ୍ୟରେ ସଂହତି ଅଭାବର ସୁଯୋଗ ଗ୍ରହଣକରି ସାର୍ କଲିନ୍ କ୍ୟାମ୍ପବେଲ୍‌ଙ୍କ ବିରାଟବାହିନୀ ଗୋଟିଗୋଟି କରି ଉତ୍ତର ଭାରତର ସମସ୍ତ ବଡ଼ବଡ଼ ସହର ପୁଣି ଅଧିକାର କରିନେଲେ । ବିପ୍ଳବୀମାନେ ଖଣ୍ଡଖଣ୍ଡ ଭାବରେ ଏହି ବିରାଟ ବାହିନୀ ନିକଟରେ ନିଶ୍ଚିହ୍ନ ହୋଇଗଲେ । ଉତ୍ତର ଭାରତରେ ନିଜ ଅବସ୍ଥାରେ ଗୁରୁତ୍ୱ ଉପଲବ୍ଧି କରି ସେମାନେ କ୍ରମଶଃ ମଧ୍ୟଭାରତକୁ ପଳାଇଯିବାକୁ ଲାଗିଲେ । ସେଠାରେ ମଧ୍ୟ ନିସ୍ତାର ନାହିଁ । ଇଂରେଜର ବିରାଟ ଷଣ୍ଢୁଆସୀ ଆକ୍ରମଣରେ ମଧ୍ୟଭାରତରେ ସାର୍ ହିଉରୋଜଙ୍କ ବିରାଟବାହିନୀ ବିନ୍ଧ୍ୟ ଓ ଯମୁନାର ମଧ୍ୟବର୍ତ୍ତୀ ଅଞ୍ଚଳ ଦେଇ ଆଗେଇ ଚାଲିଲେ କ୍ୟାମ୍ପବେଲଙ୍କ ସହ ମିଳିତ ହେବାଲାଗି ।

ଏହି ଦୁଇଟି ବିରାଟ ଶତ୍ରୁବାହିନୀର ମଝିରେ ପଡ଼ିଗଲେ ବିଦ୍ରୋହୀଗଣ । ଭୟରେ ଅଥବା ନିଜର ନିରାପତ୍ତା ଲୋଭରେ ବହୁ ଦେଶୀୟ ରାଜ୍ୟ ନିଜର ପ୍ରତିଶ୍ରୁତିକୁ ସମ୍ପୂର୍ଣ୍ଣରୂପେ ପାସୋରି ଯାଇ ଯୋଗ ଦେଲେ ଇଂରେଜ ସହିତ । ଷଣ୍ଢୁଆସୀ ଆକ୍ରମଣର ଦୁଇଟି ଅଗ୍ରଭାଗ କ୍ରମଶଃ ଆଗେଇ ଆସିଲା ଝାନ୍‌ସୀ ଆଡ଼କୁ । ଝାନ୍‌ସୀ ନିକଟରେ ପ୍ରଥମେ ପହଞ୍ଚିଲା ସାର୍ ହିଉରୋଜଙ୍କ ବାହିନୀ । ଇଂରେଜ ସେନାପତି ଆତ୍ମସମର୍ପଣ ଦାବିକରି ଦୂତ ପଠାଇଲେ ରାଣୀ ଲକ୍ଷ୍ମୀବାଈଙ୍କ ନିକଟକୁ ।

ଦୁର୍ଯ୍ୟୋଗ ଆସନ୍ନ । ଝାନ୍‌ସୀର ମନ୍ତ୍ରଣାକକ୍ଷକୁ ଘେରି ରହିଛି ଏକ ବିରାଟ ନିସ୍ତବ୍‌ଧତା । ରାଣୀ, ଉପସ୍ଥିତ ସେନାପତି ଓ ଅମାତ୍ୟମଣ୍ଡଳୀ ଆଗାମୀ ବିପଦ ଆଶଙ୍କାରେ ବିମର୍ଷ । ରାଣୀ ଲକ୍ଷ୍ମୀବାଈ କାହାରିଠାରୁ କୌଣସି ଉତ୍ସାହପୂର୍ଣ୍ଣ ବାଣୀ କିମ୍ବା ପରାମର୍ଶ ଶୁଣିବାକୁ ପାଉନାହାନ୍ତି । ଦୁର୍ବଳ ପ୍ରଧାନ ମନ୍ତ୍ରୀ ଲକ୍ଷ୍ମଣ ରାଓ ତ ଆତ୍ମସମର୍ପଣ କରିବାକୁ ପରାମର୍ଶ ଦେଇ ସାରିଲେଣି; କିନ୍ତୁ କଥାଟି ରାଣୀଙ୍କ ମନକୁ ପାଇନାହିଁ । ଏହି ସମୟରେ ଦେଖାଗଲା ଚନ୍ଦନ ହଜୁରୀ ପ୍ରଧାନ ସେନାପତି ଖୋଦାବକ୍‌ସଙ୍କ ସହିତ ନିମ୍ନ ସ୍ୱରରେ ପରାମର୍ଶରତ । କିଛି କ୍ଷଣ ପରେ ହଠାତ୍ କକ୍ଷର ନୀରବତାକୁ ଭଗ୍ନ କରି ଚନ୍ଦନ ହଜୁରୀଙ୍କ କଣ୍ଠରୁ ଶୁଣାଗଲା-

"ମହାରାଣୀ ! ଝାନ୍‌ସୀର ସ୍ୱାଧୀନତା, ଦେଶବାସୀଙ୍କ ସ୍ୱାଧୀନତାକୁ ନେଇ ଖେଳିବାର ଅଧିକାର ଆପଣଙ୍କର ବା କୌଣସି ମନ୍ତ୍ରୀର ନାହିଁ । ଝାନ୍‌ସୀର ବୀର ସୈନ୍ୟବାହିନୀ ନିଜର ଶୋଣିତ ବଦଳରେ ଯେଉଁ ସ୍ୱାଧୀନତା ହାସଲ କରିଛନ୍ତି, ଏହି ବିପଦ ସମ୍ମୁଖରେ ମଧ୍ୟ ସେମାନେ ନିଜର ରକ୍ତ ବଦଳରେ ତାହାକୁ ରକ୍ଷା କରିବାକୁ ଦୃଢ଼-ପ୍ରତିଜ୍ଞ । ପବିତ୍ର 'ଭାଗଓ୍ୱା ଝଣ୍ଡା' ବିନା ଯୁଦ୍ଧରେ ଆଜି ସୁଦ୍ଧା କାହା ପାଦତଳେ ଅବନମିତ ହୋଇନାହିଁ । ଆଜି ଯଦି ଏଭଳି ଅବସ୍ଥାନରେ କାହାର ଅମର୍ଯ୍ୟାଦା କରାଯାଏ, ତେବେ ସେ ପାପ, ସେ ଗ୍ଳାନି, ସେ କଳଙ୍କ ଶତ ଚେଷ୍ଟାସତ୍ତ୍ୱେ ଲିଭା ଯାଇପାରିବନାହିଁ । ମହାରାଣୀ ! ଆପଣଙ୍କ

ଦେହରେ କ'ଣ ସେହି ପବିତ୍ର ମହାରାଷ୍ଟ୍ର ରକ୍ତ ପ୍ରବାହିତ ହେଉନାହିଁ ? ମରହଟ୍ଟା ଜାତିର ସେହି ବିରାଟ ଐତିହ୍ୟ କ'ଣ ଆପଣ ଭୁଲିଗଲେ ? ଆପଣ କ'ଣ ଆଜି ଭୁଲିଗଲେ ମହାରାଷ୍ଟ୍ର ଜାତିର ପ୍ରତିଷ୍ଠାତା ମହାମାନ୍ୟ ଛତ୍ରପତି ଶିବାଜୀଙ୍କ ଜୀବନ ଇତିହାସ ? ଶତ ପରାଜୟ ମଧ୍ୟରେ କାହିଁ ମହାରାଜ ଶିବାଜୀ ତ କେବେହେଲେ ପରାଧୀନତାକୁ ସ୍ୱୀକାର କରିନାହାନ୍ତି । ମହାରାଣୀ ! ମନେ ରଖନ୍ତୁ ବୀର ମରହଟ୍ଟାର ତିଳତିଳ ରକ୍ତ ଦାନରେ ଯେଉଁ ବିରାଟ ମହାରାଷ୍ଟ୍ର ଜାତି ଗଢ଼ିଉଠିଛି, ସେ ଆପଣଙ୍କ କାର୍ଯ୍ୟ ଯୋଗୁଁ ଚିରକାଳ ଲାଗି ନିନ୍ଦିତ, କଳଙ୍କିତ ଓ ଅବହେଳିତ ହୋଇଯିବ । ମନେରଖନ୍ତୁ ମହାରାଣୀ ! ଦେଶର ସ୍ୱାଧୀନତା ଚିରଂଜୀବୀ । ଆତ୍ମସର୍ମପଣଦ୍ୱାରା ଆପଣ ତାହାପ୍ରତି ବିଶ୍ୱାସଘାତକତା କରିବାକୁ ଯାଉଛନ୍ତି । ଆତ୍ମ ସମର୍ପଣଦ୍ୱାରା ଝାନ୍‌ସୀରେ ଶାନ୍ତି ରହିବ ନାହିଁ । ଅରାଜକତା ସୁନିଶ୍ଚିତ । ଝାନ୍‌ସୀର ସ୍ୱାଧୀନତା ଅକ୍ଷୁଣ୍ଣ ରହିବାର ଦାୟିତ୍ୱ ଆପଣଙ୍କ ଉପରେ । ନିଜର ଦାୟିତ୍ୱରେ ହେଳା କରନ୍ତୁ ନାହିଁ । ଆତ୍ମସର୍ପଣର ପ୍ରଶ୍ନ ଉଠୁନାହିଁ ।"

ହଜୁରୀ ମହାଶୟଙ୍କ ବକ୍ତୃତା ଶେଷ ନ ହେଉଣୁ ପ୍ରଧାନ ସେନାପତି ଖୋଦାବକ୍‌ସ କୋଷମୁକ୍ତ ତରବାରୀ ହସ୍ତରେ ଉଠି ଆସି, ରାଣୀଙ୍କର ପଦତଳେ ତରବାରୀଟି ରଖି ନତଜାନୁ ହୋଇ କହିଲେ- "ମହାରାଣୀ ! ଏ ତରବାରୀ ଆପଣଙ୍କର, ଏହାର ଅମର୍ଯ୍ୟାଦା କରନ୍ତୁ ନାହିଁ ।"

ହଜୁରୀ ମହାଶୟଙ୍କ ବକ୍ତୃତା ଓ ଖୋଦାବକ୍‌ସଙ୍କ କାର୍ଯ୍ୟକଳାପ ମନ୍ତ୍ରଣାକକ୍ଷର ବାୟୁମଣ୍ଡଳକୁ ସମ୍ପୂର୍ଣ୍ଣରୂପେ ବଦଳାଇ ଦେଲା । ରାଣୀ ଉଦ୍‌ବୁଦ୍ଧ ହୋଇ ଉଠିଲେ । ଯେଉଁ ପ୍ରେରଣା, ଯେଉଁ ଉତ୍ସାହ ସେ ଏତେବେଳ ଯାଏଁ ଖୋଜୁଥିଲେ, ହଜୁରୀ ମହାଶୟଙ୍କ ଉଦ୍ଦୀପନାମୟୀ ବକ୍ତୃତା ରାଣୀଙ୍କୁ ତାହା ଯୋଗାଇ ଦେଲା । ହଠାତ୍ ସମଗ୍ର ମନ୍ତ୍ରଣା କକ୍ଷଟି ଥରି ଉଠିଲା ରାଣୀଙ୍କ ଗର୍ଜ୍ଜନରେ । ଇଂରେଜ ଦୂତକୁ ଡକାହେଲା ମନ୍ତ୍ରଣା କକ୍ଷକୁ ।

ଦୂତକୁ ଦେଖିବାମାତ୍ରେ ରାଣୀ ଗର୍ଜ୍ଜି ଉଠିଲେ, "କହ୍ ଦୀଜିୟେ, ମେରୀ ଝାନ୍‌ସୀ, ନହୀଂ ଦୂଂଗୀ ।" ଅର୍ଥାତ୍ ତୁମର ପ୍ରଭୁଙ୍କୁ କହିଦିଅ ଝାନ୍‌ସୀ ମୋର, ମୁଁ ତାହାକୁ ଦେବି ନାହିଁ ।"

ରାଣୀଙ୍କ ରଣଚଣ୍ଡୀ ମୂର୍ତ୍ତି ସର୍ଦ୍ଦାରମାନଙ୍କ ବିମର୍ଷଭାବକୁ ନିମିଷକ ମଧ୍ୟରେ ଘୁଞ୍ଚାଇ ଦେଲା । ଜଣଜଣକରି ସେମାନେ ଉଠିଆସି, ରାଣୀଙ୍କ ପଦତଳେ ନିଜ ନିଜର କୋଷମୁକ୍ତ ତରବାରୀକୁ ରଖି କହି ଉଠିଲେ, "ଜୀତୀ ରହେ ମହାରାଣୀ ଲକ୍ଷ୍ମୀବାଈ; ଉଁ ଚା ରହେ ଭାଗଓ୍ୱା ଝଣ୍ଡା ।"



## ଝଡ଼

ଝାନ୍‌ସୀ ନଗରୀରେ ପୁଣି ବାଜି ଉଠିଲା ରଣ ଦୁନ୍ଦୁଭି । ବିପୁଳ ଉତ୍ସାହରେ ଆରମ୍ଭ ହେଲା ଯୁଦ୍ଧାୟୋଜନ । ସୈନିକର ପୋଷାକ ପିନ୍ଧି ରାଣୀ ସ୍ୱୟଂ ତଦାରଖ କରିବାକୁ ଲାଗିଲେ ପ୍ରତ୍ୟେକଟି ବ୍ୟବସ୍ଥା । ଚନ୍ଦନ ହଜୁରୀଙ୍କ ନିର୍ଦ୍ଦେଶାନୁଯାୟୀ ଶତ୍ରୁ ଆଗେଇବା ରାସ୍ତାର ଆଖପାଖ ଅଞ୍ଚଳ ସବୁ ପୋଡ଼ିଜାଳି ଧ୍ୱଂସ କରି ଦିଆ ହେଲା । ଉଦ୍ଦେଶ୍ୟ ଇଂରେଜମାନେ ପଥ ମଧ୍ୟରେ ଝାନ୍‌ସୀବାସୀଙ୍କଠାରୁ କୌଣସି ପ୍ରକାରେ ସାହାଯ୍ୟ ଯେପରି ନ ପାଆନ୍ତି ।

୧୮୫୮ ସାଲ, ଜାନୁୟାରୀ ୨୫ ତାରିଖ । ଦୁର୍ଗ ପ୍ରାଚୀର ଉପରୁ "ଘନ ଗର୍ଜ୍ଜନ" କରି ସ୍ୱାଗତ କଲା ସାର୍ ହିଉ ରୋଜଙ୍କ ଇଂରେଜ ବାହିନୀକୁ । ଇଂରେଜ ସେନାପତି ଦେଖନ୍ତି ତ ଝାନ୍‌ସୀ ଚୂଡ଼ାନ୍ତ ଭାବେ ସୁସଜ୍ଜିତ । ଝାନ୍‌ସୀ ତରୁଣୀମାନେ ବଳୟ କଙ୍କଣ ତ୍ୟାଗକରି ଦୁର୍ଗର ସୈନ୍ୟବୃନ୍ଦଙ୍କୁ ସାହାଯ୍ୟ କରୁଛନ୍ତି । ରସଦ ବହନକରି ଆହତ ସୈନ୍ୟମାନଙ୍କର ସେବାର ଭାର ଗ୍ରହଣ କରିଛନ୍ତି ସେହିମାନେ ।

୨୫ ତାରିଖଠାରୁ ଅସଲ ଯୁଦ୍ଧର ଆରମ୍ଭ । ଭୀଷଣ ଯୁଦ୍ଧ । ଐତିହାସିକ D.B. Parasnisଙ୍କ ଏହି ଯୁଦ୍ଧର ବର୍ଣ୍ଣନା ନିମ୍ନରେ ଉଦ୍ଧାରିତ କରୁଛି ।

"ଭୟାବହ ଯୁଦ୍ଧ । ସାରାଦିନ ସାରାରାତି ଇଂରେଜବାହିନୀ ଦୁର୍ଗ ଉପରେ ଗୋଳାବର୍ଷଣରେ ରତ । ମୁହୂର୍ତ୍ତକ ପାଇଁ ବିରାମ ନାହିଁ । ଝାନ୍‌ସୀ ନଗରୀର ଚତୁର୍ଦ୍ଦିଗରେ ଗୋଳା ଆସି ପଡୁଛି । ୫୦-୬୦ ପାଉଣ୍ଡର ଗୋଳା, ଦୂରରୁ ଗୋଟିଏ ଲେଖାଏଁ ଟେନିସି ବଲଭଳି ମନେ ହେଉଛି । ଦିନବେଳେ ସୂର୍ଯ୍ୟାଲୋକ ଯୋଗୁଁ ସେମାନଙ୍କର ଜ୍ୟୋତି ଜଣା ପଡୁନାହିଁ; କିନ୍ତୁ ରାତ୍ରିର ଅନ୍ଧକାରରେ ମନେହେଉଛି ସତେ ଯେପରି ଜ୍ୱଳନ୍ତ ଲାଭା ସ୍ରୋତ ଅବିଶ୍ରାନ୍ତ ମାଡ଼ି ଆସୁଛି ଝାନ୍‌ସୀ ଉପରକୁ । ଗୋଲାର ରକ୍ତିମ ଆଭାରେ ରାତ୍ରି ହୋଇ ଉଠୁଛି ରକ୍ତାଭ । ଏହି ଭାବରେ ସାରା ରାତ୍ରି ଚାଲିଲା ଗୋଳାବର୍ଷଣ । ୨୬ ତାରିଖ ଦ୍ୱିପ୍ରହର ବେଳେ ଇଂରେଜମାନେ ଦକ୍ଷିଣ କବାଟର ପ୍ରଧାନ ଗୋଲନ୍ଦାଜଙ୍କୁ ନୀରବ କରିଦେଲେ । ଅବିରତ ଗୋଳାବର୍ଷଣ ଫଳରେ ଦକ୍ଷିଣ କବାଟ ଭାଙ୍ଗି ପଡ଼ିବା ଉପରେ । ସାହସ କରି କେହି ଆଉ ସେ ଦିଗକୁ ଅଗ୍ରସର ହୋଇପାରୁ ନାହାନ୍ତି । ରାଣୀ ବିପଦର ଗୁରୁତ୍ୱ ଉପଲବ୍ଧି କରି ପ୍ରଧାନ ଗୋଲନ୍ଦାଜ ଗୋଲାମ ଗୌସଙ୍କୁ ନିର୍ଦ୍ଦେଶ ଦେଲେ- "ଦକ୍ଷିଣ କବାଟ ରକ୍ଷା କରିବାକୁ ହିଁ ହେବ ।" ବୀର ଗୋଲାମ ଗୌସ ପଶ୍ଚିମ କବାଟ ପଟରୁ ଆରମ୍ଭ କଲେ ଆକ୍ରମଣ ଏବଂ ବାରବାର ତିନିବାର ଚେଷ୍ଟାପରେ ଗୋଲାମ ଗୌସଙ୍କ କମାଣ ଇଂରାଜ ଗୋଲନ୍ଦାଜକୁ ନୀରବ କରିଦେଲା । ରାଣୀ ନିଜର ବଳୟ ଖୋଲି ଗୋଲାମ ଗୌସଙ୍କୁ ଦେଲେ ପୁରସ୍କାର । ବୀର ଗୋଲାମ ଗୌସ ଭକ୍ତି ଭରରେ ଉଠାଇ ନେଲେ ରାଣୀଙ୍କ ପୁରସ୍କାର ।"

ଏହିଭଳି ପାଞ୍ଚଦିନ କାଳ ଅବିରାମ ଆକ୍ରମଣ ପରେ ମଧ୍ୟ ଦେଖାଗଲା ଝାନ୍‌ସୀ ଦୁର୍ଗ ରହିଛି ଅଟଳ । ଗୋଲାମ ଗୌସଙ୍କ "ଘନଗର୍ଜ" ଓ "ଭବାନୀଶଙ୍କର" ଇଂରାଜବାହିନୀ ମଧ୍ୟରେ ସୃଷ୍ଟି କଲାଣି ଆତଙ୍କ । ଆହୁରି ଦୁଇଦିନ ଅତିବାହିତ ହେଲା । ସପ୍ତମ ଦିନ ଇଂରେଜ କମାଣ ମାଡ଼ରେ ଦୁର୍ଗପ୍ରାଚୀରର ବାମ ଦିଗର କେତେକାଂଶ ଭାଙ୍ଗି ପଡ଼ିଲା । ଇଂରେଜ ଗୋଲନ୍ଦାଜଗଣ ସୁବିଧା ଦେଖି ସେହି ଭଙ୍ଗା ଅଂଶ ଆଡ଼କୁ ଆରମ୍ଭ କରିଦେଲେ ଗୋଳାବର୍ଷଣ । ଏହି ଗୋଳାବର୍ଷଣ ମଧ୍ୟରେ ପ୍ରାଚୀର ମରାମତି କରିବା ଏକରକମ ଅସମ୍ଭବ କହିଲେ ଚଳେ; କିନ୍ତୁ ସେଦିନ ରାତ୍ରିରେ ୧୧ ଜଣ ବୀର ସୈନିକ ନିଜର ଜୀବନକୁ ତୁଚ୍ଛକରି ଆଗେଇ ଗଲେ ଭଗ୍ନାଂଶ ମରାମତି କରିବାକୁ ଏବଂ ପରଦିନ ପ୍ରଭାତ ବେଳକୁ ବିସ୍ମିତ ଇଂରେଜ ସେନାପତି ଦେଖନ୍ତି ପ୍ରାଚୀର ମରାମତି ସମ୍ପୂର୍ଣ୍ଣ । ପୁଣି ଆରମ୍ଭ ହେଲା ଭୀଷଣ ଗୋଳାବର୍ଷଣ । କ୍ରମାନ୍ୱୟରେ ଆଠଦିନକାଳ ଯୁଦ୍ଧ କରିବା ଫଳରେ ଝାନ୍‌ସୀର ସୈନ୍ୟମାନେ କ୍ଳାନ୍ତ, କେବଳ ରାଣୀଙ୍କ ଉତ୍ସାହବାଣୀ ଯୋଗୁଁ ସେମାନେ ପ୍ରତିଆକ୍ରମଣ କରି ଚାଲିଛନ୍ତି ।

କିନ୍ତୁ ଏହି ପ୍ରଳୟଙ୍କରୀ ଯୁଦ୍ଧ ମଧ୍ୟରେ ସୁଦ୍ଧା ରାଣୀଙ୍କ ଦୃଷ୍ଟି ସବୁବେଳେ ନିବଦ୍ଧ

ରହିଛି ଦୂର ଦିଗ୍‌ବଳୟ ଉପରେ; କାରଣ ପୂର୍ବ ପରାମର୍ଶ ଅନୁଯାୟୀ ତାନ୍ତିଆ ଟୋପୀଙ୍କର ଆକ୍ରମଣ କରିବା କଥା ଇଂରାଜମାନଙ୍କ ପଛପଟରୁ ଅତର୍କିତ ଭାବରେ । ହଠାତ୍ ନବମ ଦିନ ରାଣୀ ଯେଉଁ ଇଙ୍ଗିତ ଆଶାରେ ଦୂରଦିଗ୍‌ବଳୟକୁ ଲକ୍ଷ୍ୟ କରୁଥିଲେ ତାହା ସ୍ପଷ୍ଟ ହୋଇ ଦେଖାଗଲା । ପଛପଟରୁ ତାନ୍ତିଆ ଟୋପୀ ପୂର୍ବକଥାନୁଯାୟୀ ସସୈନ୍ୟରେ ଆସି ପହଞ୍ଚି ଯାଇଛନ୍ତି । ଉଲ୍ଲାସରେ ରାଣୀଙ୍କ ପ୍ରାଣ ମନ ନାଚି ଉଠିଲା ।

କିନ୍ତୁ ଏହି ଉଲ୍ଲାସ ବେଶି ସମୟ ସ୍ଥାୟୀ ହୋଇ ପାରିଲା ନାହିଁ । କୁଶଳୀ ଇଂରେଜ ସେନାପତି ତାନ୍ତିଆ ଟୋପୀଙ୍କର ଏହି ଆକ୍ରମଣ କଥା ନିଜର ଚରଠାରୁ ସଂଗ୍ରହ କରି ଆଗରୁ ପ୍ରସ୍ତୁତ ଥିଲେ । ତାନ୍ତିଆ ଟୋପୀଙ୍କର ରଣକୌଶଳ ବ୍ୟର୍ଥ ହୋଇଗଲା । ଆକ୍ରମଣ କରିବାକୁ ଯାଇ ଦେଖନ୍ତି ଇଂରେଜବାହିନୀର ଏକ ବୃହତ୍ ଅଂଶ ସତେ ଯେପରି ତାହାଙ୍କୁ ଅପେକ୍ଷା କରି ରହିଛନ୍ତି । ବିରାଟ ଇଂରେଜ ବାହିନୀ ସମ୍ମୁଖରେ ତାନ୍ତିଆ ଟୋପୀଙ୍କ କ୍ଷୁଦ୍ର ସେନାନୀ ବେଶିକ୍ଷଣ ତିଷ୍ଠି ପାରିଲାନାହିଁ । ପରାଜିତ ତାନ୍ତିଆ ଟୋପୀଙ୍କୁ ପୁଣି ଆତ୍ମଗୋପନ କରିବାକୁ ପଡ଼ିଲା ।

ସାର ହିଉରୋଜ ଚରମ ଶକ୍ତି ସହ ଆକ୍ରମଣ କଲେ ଦୁର୍ଗ ଉପରେ; କିନ୍ତୁ ତାହା ସତ୍ତ୍ୱେ ଦେଖାଗଲା, ଝାନ୍‌ସୀର ଦୁର୍ଗ ରହିଛି ଅବିଚଳ । ଠିକ୍ ଏହି ସମୟରେ ଦୁର୍ଗ ମଧ୍ୟରେ ଫଣା ଟେକି ଉଠିଲା ବିଷଧର ସର୍ପ – ବିଶ୍ୱାସଘାତକ ବୁନ୍ଦେଲା ସର୍ଦ୍ଦାର ଠାକୁର ଲାଲାଜୀ । ସେଦିନ ରାତ୍ରିରେ ନରାଧମ ଠାକୁର ଲାଲାଜୀ ଚନ୍ଦନ ହଜୁରୀଙ୍କ ଆଖିରେ ଧୂଳି ପକାଇ ଶତ୍ରୁର ସୁବିଧା ଲାଗି ଖୋଲିଦେଲା ବୋରହା ଦରୱାଜା । ଅନ୍ଧକାରର ସୁଯୋଗ ଗ୍ରହଣକରି ଶତ୍ରୁବାହିନୀ ସମୁଦ୍ରର ଲହରୀପରି ମାଡ଼ି ଆସିଲେ ଦୁର୍ଗ ଭିତରକୁ । ରାଣୀ ଦେଖନ୍ତି ଯୁଦ୍ଧ କରିବା ଆଉ ନିରର୍ଥକ । ଉତ୍‌ଫୁଲ୍ଲ ଇଂରେଜ ସେନାପତି ଦୁର୍ଗ ଅଧିକାର କରି ଦୁର୍ଗାଧିପତିଙ୍କୁ ବନ୍ଦୀ କରିବା ଆଶାରେ ଖୋଜି ଦେଖନ୍ତି ତ ରାଣୀଙ୍କ ଚିହ୍ନ ବର୍ଣ୍ଣ ସୁଦ୍ଧା ନାହିଁ । ରାତ୍ରିର ଅନ୍ଧକାରରେ ସେହି ବୀରା ରମଣୀ ପୁତ୍ର ଦାମୋଦରଙ୍କୁ ନିଜ ପିଠିରେ ବାନ୍ଧି ଗୁପ୍ତଦ୍ୱାର ବାଟେ ଖସି ଯାଇଛନ୍ତି ଦୁର୍ଗ ମଧ୍ୟରୁ ଏବଂ ତାହାଙ୍କ ସଙ୍ଗେ ମଧ୍ୟ ଚାଲିଯାଇଛନ୍ତି ବିଦ୍ରୋହର ଅନ୍ୟତମ ଅଗ୍ନି କଣା ଚନ୍ଦନ ହଜୁରୀ ।

ବିଶ୍ୱାସଘାତକ ବୁନ୍ଦେଲା ସର୍ଦ୍ଦାର ଠାକୁର ଲାଲାଜୀଙ୍କ ଯୋଗୁଁ ଝାନ୍‌ସୀର ହେଲା ପତନ । ବିଜୟୀ ଇଂରେଜ ସୈନ୍ୟ ସେଦିନ ଝାନ୍‌ସୀ ଦୁର୍ଗରେ ଯେଉଁ ନାରକୀୟ ହତ୍ୟାଲୀଳା ଚଳାଇଥିଲେ ସେ ବିଷୟରେ ଆଜିର ଇତିହାସ ଏକବାରେ ନୀରବ । ଯେଉଁଦିନ ଭାରତର ସଠିକ ଇତିହାସ ଲେଖାଯିବ, ସେ ଦିନ ଦେଶ ଜାଣିବ, ଇଂରେଜର ନୃଶଂସତା କିପରି ଭାରତୀୟ ସିପାହୀମାନଙ୍କର ମନୋବଳକୁ ମ୍ଳାନ କରି ଦେଇଛି ।

ରାଜ୍ୟହରା ରାଣୀ ଦୁଃଖରେ ମ୍ରିୟମାଣ ହେବା ପରିବର୍ତ୍ତେ ପରାଜୟର ପ୍ରତିଶୋଧ ନେବା ଲାଗି ଦୃଢ଼ପ୍ରତିଜ୍ଞ ହୋଇଯାଇ ପହଞ୍ଚିଲେ ବିଦ୍ରୋହୀମାନଙ୍କର ଶେଷ ଘାଟୀ କାଞ୍ଚୀରେ । ସେଠାରେ ନବଭାରତର ପ୍ରଥମ ଗଣଅଭ୍ୟୁଦୟର ତିନିଜଣ ପୁରୋଧା ରାଓସାହେବ, ତାନ୍ତିଆ ଟୋପୀ ଓ ରାଣୀ ଲକ୍ଷ୍ମୀବାଈଙ୍କ ମଧ୍ୟରେ ହେଲା ପରାମର୍ଶ । ଶେଷରେ ଠିକ୍ ହେଲା ଝାନ୍‌ସୀ ପୁନରଧିକାର କରିବାକୁ ହେବ । ଇଂରେଜଙ୍କୁ ଶକ୍ତି ସଙ୍ଗଠନ କରିବାକୁ ସମୟ ଦେବା ଆଦୌ ଉଚିତ ନୁହେଁ । ତେଣୁ ଯେତେ ଶୀଘ୍ର ସମ୍ଭବ ସମର ଆୟୋଜନ ସମାପ୍ତ କରି ବିଦ୍ରୋହୀବାହିନୀ ଆଗେଇ ଗଲା ଇଂରେଜଙ୍କୁ ଆକ୍ରମଣ କରିବାକୁ; କିନ୍ତୁ ଉପଯୁକ୍ତ ସଙ୍ଗଠନର ଅଭାବରୁ ବିଦ୍ରୋହୀମାନଙ୍କ ଆକ୍ରମଣ ଅଳ୍ପ ସମୟ ମଧ୍ୟରେ ମଉଳି ପଡ଼ିଲା । ବିପ୍ଳବୀବାହୀନୀ ଅତି ଶୋଚନୀୟଭାବେ ପରାଜିତ ହେଲେ । ଅଳ୍ପସମୟ ମଧ୍ୟରେ କୁଚ୍‌ଗାଓଁ ଯୁଦ୍ଧର ସୀମାଂସା ହୋଇଗଲା ।

ରାଣୀ ଲକ୍ଷ୍ମୀବାଈ ଦେଖନ୍ତି ଯେ, ଯଥାଶୀଘ୍ର ସମ୍ଭବ ଅବଶିଷ୍ଟ ସୈନ୍ୟଙ୍କୁ ନେଇ ପଳାଇଯିବା ହିଁ ବୁଦ୍ଧିମାନର କାର୍ଯ୍ୟ । ଏହି ପ୍ରତ୍ୟାବର୍ତ୍ତନ କାର୍ଯ୍ୟଟି ରାଣୀ ଯେପରି ଶୃଙ୍ଖଳାର ସହିତ କରିପାରିଥିଲେ, ତାହା ଯେ କୌଣସି ସମରନାୟକ ପକ୍ଷରେ ଏକ ଗୌରବର ବସ୍ତୁ । ଇଂରେଜ ଐତିହାସିକ ମ୍ୟାଲେସନ୍ ମୁକ୍ତକଣ୍ଠରେ ରାଣୀଙ୍କର ଏହି ସମର କୌଶଳର ଭୂୟସୀ ପ୍ରଶଂସା କରିଛନ୍ତି । ବାରମ୍ବାର ଇଂରାଜ ନିକଟରେ ପରାଜିତ ହୋଇ ବିପ୍ଳବୀବାହିନୀର ମନୋବଳ ପ୍ରାୟ ଭାଙ୍ଗି ପଡ଼ିବାକୁ ବସିଲାଣି, କେବଳ ଦୃଢ଼ପ୍ରତିଜ୍ଞ ରହିଛନ୍ତି ବିପ୍ଳବର ପୁରୋଧା ତାନ୍ତିଆଟୋପୀ । ଇତି ମଧ୍ୟରେ ଇଂରାଜମାନେ ବିପ୍ଳବୀମାନଙ୍କର ଶେଷଘାଟି କାଞ୍ଚୀ ଅଧିକାର କରି ନେଲେଣି । ହିମାଳୟଠାରୁ ନର୍ମଦା ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ ଇଂରେଜର କବଳରେ । ବିପ୍ଳବୀମାନେ ସମ୍ବଳହୀନ, ରାଜ୍ୟହୀନ ଏବଂ ଦୁର୍ଗହୀନ ।

କୌଶଳୀ ତାନ୍ତିଆ ଟୋପୀ ଏହି ସମୟରେ ଏକ ଉପାୟ ପାଞ୍ଚିଲେ । ଗୋୟାଲିୟର ଏକ ସୁଦୃଢ଼ ଦୁର୍ଗ ଏବଂ ତାହାର ଅଧିପତି ସିନ୍ଧିୟା ଇଂରେଜମାନଙ୍କର ପରମ ମିତ୍ର । ତାନ୍ତିଆ ଟୋପୀ ଜାଣିପାରିଲେ ଯେ ଦୁର୍ଗପତି ସିନ୍ଧିୟା ଇଂରେଜଙ୍କର ମିତ୍ର ହେଲେ ହେଁ ଜନସାଧାରଣଙ୍କ ମନୋଭାବ ଇଂରେଜର ପ୍ରତିକୂଳ । ଏହା ହିଁ ସୁବର୍ଣ୍ଣ ସୁଯୋଗ । ସୁବିଧା ଦେଖି ତାନ୍ତିଆ ଟୋପୀ ପ୍ରଜାମାନଙ୍କୁ ମତାଇ ହଠାତ୍ ଗୋୟାଲିଅରରେ ଜାଳିଦେଲେ ବିଦ୍ରୋହର ନିଆଁ ଏବଂ ସେ ସୁଯୋଗରେ ରାଣୀ ଲକ୍ଷ୍ମୀବାଈଙ୍କ ସହ ସଗର୍ବରେ ଗୋୟାଲିଅରରେ ପ୍ରବେଶ କରି ଦୁର୍ଗ ଅଧିକାର କଲେ ।

ଅବସ୍ଥା ଗୁରୁତର ଦେଖି ସିନ୍ଧିୟା ସାର୍ ହିଉରୋଜଙ୍କ ଶରଣାପନ୍ନ ହେଲେ । ବିପ୍ଳବୀମାନଙ୍କର ଏହି ଆକସ୍ମିକ ସମର-କୌଶଳରେ ସାର ହିଉରୋଜ ଚକିତ ହୋଇଗଲେ ।

ରହିଛି ଦୂର ଦିଗ୍‌ବଳୟ ଉପରେ; କାରଣ ପୂର୍ବ ପରାମର୍ଶ ଅନୁଯାୟୀ ତାନ୍ତିଆ ଟୋପୀଙ୍କର ଆକ୍ରମଣ କରିବା କଥା ଇଂରାଜମାନଙ୍କ ପଛପଟରୁ ଅତର୍କିତ ଭାବରେ । ହଠାତ୍ ନବମ ଦିନ ରାଣୀ ଯେଉଁ ଇଙ୍ଗିତ ଆଶାରେ ଦୂରଦିଗ୍‌ବଳୟକୁ ଲକ୍ଷ୍ୟ କରୁଥିଲେ ତାହା ସ୍ପଷ୍ଟ ହୋଇ ଦେଖାଗଲା । ପଛପଟରୁ ତାନ୍ତିଆ ଟୋପୀ ପୂର୍ବକଥାନୁଯାୟୀ ସସୈନ୍ୟରେ ଆସି ପହଞ୍ଚି ଯାଇଛନ୍ତି । ଉଲ୍ଲାସରେ ରାଣୀଙ୍କ ପ୍ରାଣ ମନ ନାଚି ଉଠିଲା ।

କିନ୍ତୁ ଏହି ଉଲ୍ଲାସ ବେଶି ସମୟ ସ୍ଥାୟୀ ହୋଇ ପାରିଲା ନାହିଁ । କୁଶଳୀ ଇଂରେଜ ସେନାପତି ତାନ୍ତିଆ ଟୋପୀଙ୍କର ଏହି ଆକ୍ରମଣ କଥା ନିଜର ଚରଠାରୁ ସଂଗ୍ରହ କରି ଆଗରୁ ପ୍ରସ୍ତୁତ ଥିଲେ । ତାନ୍ତିଆ ଟୋପୀଙ୍କର ରଣକୌଶଳ ବ୍ୟର୍ଥ ହୋଇଗଲା । ଆକ୍ରମଣ କରିବାକୁ ଯାଇ ଦେଖନ୍ତି ଇଂରେଜବାହିନୀର ଏକ ବୃହତ୍ ଅଂଶ ସତେ ଯେପରି ତାହାଙ୍କୁ ଅପେକ୍ଷା କରି ରହିଛନ୍ତି । ବିରାଟ ଇଂରେଜ ବାହିନୀ ସମ୍ମୁଖରେ ତାନ୍ତିଆ ଟୋପୀଙ୍କ କ୍ଷୁଦ୍ର ସେନାନୀ ବେଶିକ୍ଷଣ ତିଷ୍ଠି ପାରିଲାନାହିଁ । ପରାଜିତ ତାନ୍ତିଆ ଟୋପୀଙ୍କୁ ପୁଣି ଆତ୍ମଗୋପନ କରିବାକୁ ପଡ଼ିଲା ।

ସାର ହିଉରୋଜ ଚରମ ଶକ୍ତି ସହ ଆକ୍ରମଣ କଲେ ଦୁର୍ଗ ଉପରେ; କିନ୍ତୁ ତାହା ସତ୍ତ୍ୱେ ଦେଖାଗଲା, ଝାନ୍‌ସୀର ଦୁର୍ଗ ରହିଛି ଅବିଚଳ । ଠିକ୍ ଏହି ସମୟରେ ଦୁର୍ଗ ମଧ୍ୟରେ ଫଣା ଟେକି ଉଠିଲା ବିଷଧର ସର୍ପ - ବିଶ୍ୱାସଘାତକ ବୁନ୍ଦେଲା ସର୍ଦ୍ଦାର ଠାକୁର ଲାଲାଜୀ । ସେଦିନ ରାତ୍ରିରେ ନରାଧମ ଠାକୁର ଲାଲାଜୀ ଚନ୍ଦନ ହଜୁରୀଙ୍କ ଆଖିରେ ଧୂଳି ପକାଇ ଶତ୍ରୁର ସୁବିଧା ଲାଗି ଖୋଲିଦେଲା ବୋରହା ଦରୱାଜା । ଅନ୍ଧକାରର ସୁଯୋଗ ଗ୍ରହଣକରି ଶତ୍ରୁବାହିନୀ ସମୁଦ୍ରର ଲହରୀପରି ମାଡ଼ି ଆସିଲେ ଦୁର୍ଗ ଭିତରକୁ । ରାଣୀ ଦେଖନ୍ତି ଯୁଦ୍ଧ କରିବା ଆଉ ନିରର୍ଥକ । ଉତ୍‌ଫୁଲ୍ଲ ଇଂରେଜ ସେନାପତି ଦୁର୍ଗ ଅଧିକାର କରି ଦୁର୍ଗାଧିପତିଙ୍କୁ ବନ୍ଦୀ କରିବା ଆଶାରେ ଖୋଜି ଦେଖନ୍ତି ତ ରାଣୀଙ୍କ ଚିହ୍ନ ବର୍ଣ୍ଣ ସୁଦ୍ଧା ନାହିଁ । ରାତ୍ରିର ଅନ୍ଧକାରରେ ସେହି ବୀରା ରମଣୀ ପୁତ୍ର ଦାମୋଦରକୁ ନିଜ ପିଠିରେ ବାନ୍ଧି ଗୁପ୍ତଦ୍ୱାର ବାଟେ ଖସି ଯାଇଛନ୍ତି ଦୁର୍ଗ ମଧ୍ୟରୁ ଏବଂ ତାହାଙ୍କ ସଙ୍ଗେ ମଧ ଚାଲିଯାଇଛନ୍ତି ବିଦ୍ରୋହର ଅନ୍ୟତମ ଅଗ୍ନି କଣା ଚନ୍ଦନ ହଜୁରୀ ।

ବିଶ୍ୱାସଘାତକ ବୁନ୍ଦେଲା ସର୍ଦ୍ଦାର ଠାକୁର ଲାଲାଜୀଙ୍କ ଯୋଗୁଁ ଝାନ୍‌ସୀର ହେଲା ପତନ । ବିଜୟୀ ଇଂରେଜ ସୈନ୍ୟ ସେଦିନ ଝାନ୍‌ସୀ ଦୁର୍ଗରେ ଯେଉଁ ନାରକୀୟ ହତ୍ୟାଲୀଳା ଚଳାଇଥିଲେ ସେ ବିଷୟରେ ଆଜିର ଇତିହାସ ଏକବାରେ ନୀରବ । ଯେଉଁଦିନ ଭାରତର ସଠିକ ଇତିହାସ ଲେଖାଯିବ, ସେ ଦିନ ଦେଶ ଜାଣିବ, ଇଂରେଜର ନୃଶଂସତା କିପରି ଭାରତୀୟ ସିପାହୀମାନଙ୍କର ମନୋବଳକୁ ମ୍ଳାନ କରି ଦେଇଛି ।

ରାଜ୍ୟହରା ରାଣୀ ଦୁଃଖରେ ମ୍ରିୟମାଣ ହେବା ପରିବର୍ତ୍ତେ ପରାଜୟର ପ୍ରତିଶୋଧ ନେବା ଲାଗି ଦୃଢ଼ପ୍ରତିଜ୍ଞ ହୋଇଯାଇ ପହଞ୍ଚିଲେ ବିଦ୍ରୋହୀମାନଙ୍କର ଶେଷ ଘାଟୀ କାଲ୍ପୀରେ । ସେଠାରେ ନବଭାରତର ପ୍ରଥମ ଗଣଅଭ୍ୟୁଦୟର ତିନିଜଣ ପୁରୋଧା ରାଓସାହେବ, ତାନ୍ତିଆ ଟୋପୀ ଓ ରାଣୀ ଲକ୍ଷ୍ମୀବାଈଙ୍କ ମଧ୍ୟରେ ହେଲା ପରାମର୍ଶ । ଶେଷରେ ଠିକ୍ ହେଲା ଝାନ୍‌ସୀ ପୁନରଧିକାର କରିବାକୁ ହେବ । ଇଂରେଜକୁ ଶକ୍ତି ସଙ୍ଗଠନ କରିବାକୁ ସମୟ ଦେବା ଆଦୌ ଉଚିତ ନୁହେଁ । ତେଣୁ ଯେତେ ଶୀଘ୍ର ସମ୍ଭବ ସମର ଆୟୋଜନ ସମାପ୍ତ କରି ବିଦ୍ରୋହୀବାହିନୀ ଆଗେଇ ଗଲା ଇଂରେଜକୁ ଆକ୍ରମଣ କରିବାକୁ; କିନ୍ତୁ ଉପଯୁକ୍ତ ସଙ୍ଗଠନର ଅଭାବରୁ ବିଦ୍ରୋହୀମାନଙ୍କ ଆକ୍ରମଣ ଅଳ୍ପ ସମୟ ମଧ୍ୟରେ ମଉଳି ପଡ଼ିଲା । ବିପ୍ଳବୀବାହୀନୀ ଅତି ଶୋଚନୀୟଭାବେ ପରାଜିତ ହେଲେ । ଅଳ୍ପସମୟ ମଧ୍ୟରେ କୁଚ୍‌ଗାଓଁ ଯୁଦ୍ଧର ସୀମାଂସା ହୋଇଗଲା ।

ରାଣୀ ଲକ୍ଷ୍ମୀବାଈ ଦେଖନ୍ତି ଯେ, ଯଥାଶୀଘ୍ର ସମ୍ଭବ ଅବଶିଷ୍ଟ ସୈନ୍ୟଙ୍କୁ ନେଇ ପଳାଇଯିବା ହିଁ ବୁଦ୍ଧିମାନର କାର୍ଯ୍ୟ । ଏହି ପ୍ରତ୍ୟାବର୍ତ୍ତନ କାର୍ଯ୍ୟଟି ରାଣୀ ଯେପରି ଶୃଙ୍ଖଳାର ସହିତ କରିପାରିଥିଲେ, ତାହା ଯେ କୌଣସି ସମରନାୟକ ପକ୍ଷରେ ଏକ ଗୌରବର ବସ୍ତୁ । ଇଂରେଜ ଐତିହାସିକ ମ୍ୟାଲେସନ୍ ମୁକ୍ତକଣ୍ଠରେ ରାଣୀଙ୍କର ଏହି ସମର କୌଶଳର ଭୂୟସୀ ପ୍ରଶଂସା କରିଛନ୍ତି । ବାରମ୍ବାର ଇଂରାଜ ନିକଟରେ ପରାଜିତ ହୋଇ ବିପ୍ଳବୀବାହିନୀର ମନୋବଳ ପ୍ରାୟ ଭାଙ୍ଗି ପଡ଼ିବାକୁ ବସିଲାଣି, କେବଳ ଦୃଢ଼ପ୍ରତିଜ୍ଞ ରହିଛନ୍ତି ବିପ୍ଳବର ପୁରୋଧା ତାନ୍ତିଆଟୋପୀ । ଇତି ମଧ୍ୟରେ ଇଂରାଜମାନେ ବିପ୍ଳବୀମାନଙ୍କର ଶେଷଘାଟି କାଲ୍ପୀ ଅଧିକାର କରି ନେଲେଣି । ହିମାଳୟଠାରୁ ନର୍ମଦା ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ ଇଂରେଜର କବଳରେ । ବିପ୍ଳବୀମାନେ ସମ୍ବଳହୀନ, ରାଜ୍ୟହୀନ ଏବଂ ଦୁର୍ଗହୀନ ।

କୌଶଳୀ ତାନ୍ତିଆ ଟୋପୀ ଏହି ସମୟରେ ଏକ ଉପାୟ ପାଞ୍ଚିଲେ । ଗୋୟାଲିୟର ଏକ ସୁଦୃଢ଼ ଦୁର୍ଗ ଏବଂ ତାହାର ଅଧିପତି ସିନ୍ଧିୟା ଇଂରେଜମାନଙ୍କର ପରମ ମିତ୍ର । ତାନ୍ତିଆ ଟୋପୀ ଜାଣିପାରିଲେ ଯେ ଦୁର୍ଗପତି ସିନ୍ଧିୟା ଇଂରେଜଙ୍କର ମିତ୍ର ହେଲେ ହେଁ ଜନସାଧାରଣଙ୍କ ମନୋଭାବ ଇଂରେଜର ପ୍ରତିକୂଳ । ଏହା ହିଁ ସୁବର୍ଣ୍ଣ ସୁଯୋଗ । ସୁବିଧା ଦେଖି ତାନ୍ତିଆ ଟୋପୀ ପ୍ରଜାମାନଙ୍କୁ ମତାଇ ହଠାତ୍ ଗୋୟାଲିଅରରେ ଜାଳିଦେଲେ ବିଦ୍ରୋହର ନିଆଁ ଏବଂ ସେ ସୁଯୋଗରେ ରାଣୀ ଲକ୍ଷ୍ମୀବାଈଙ୍କ ସହ ସଗର୍ବରେ ଗୋୟାଲିଅରରେ ପ୍ରବେଶ କରି ଦୁର୍ଗ ଅଧିକାର କଲେ ।

ଅବସ୍ଥା ଗୁରୁତର ଦେଖି ସିନ୍ଧିୟା ସାର୍ ହିଉରୋଜଙ୍କ ଶରଣାପନ୍ନ ହେଲେ । ବିପ୍ଳବୀମାନଙ୍କର ଏହି ଆକସ୍ମିକ ସମର-କୌଶଳରେ ସାର ହିଉରୋଜ ଚକିତ ହୋଇଗଲେ ।

ତେବେ ଚନ୍ଦନ ହଜୁରୀ ଦେଢ଼ ବର୍ଷକାଳ ଜଙ୍ଗଲରେ ଇତସ୍ତତଃ ଭ୍ରମଣକରି ଆସି ପହଞ୍ଚିଲେ କାଲାକାଙ୍କରରେ । କାଲାକାଙ୍କର ରାଜପ୍ରସାଦରେ ନିଜର ପରିଚୟ ଦିଅନ୍ତେ, କାଲାକାଙ୍କର ନୃପତି, ହଜୁରୀ ମହାଶୟଙ୍କର ଶିଷ୍ୟ ସମ୍ମାନରେ ହଜୁରୀ ମହାଶୟଙ୍କୁ ରଖିଲେ; କିନ୍ତୁ ତାହାଙ୍କ ଉପସ୍ଥିତିକୁ ଯେତେଦୂର ସମ୍ଭବ ଗୁପ୍ତ ରଖାଗଲା ।

୧୮୫୬ ମସିହା- ବିପ୍ଳବର ପ୍ରାୟ ୪ ବର୍ଷ ପରେ । ସେତେବେଳେ ଇଂରେଜ ଶାସକର ଦମନ ଲୀଳା ପ୍ରାୟ ଥମି ଆସିଲାଣି । କାଲାକାଙ୍କରରେ ଚାରି ବର୍ଷ କାଳ ଗୋପନରେ ଅତିବାହିତ କରିବା ପରେ କୁମାରପୂର୍ଣ୍ଣିମା ଦିନ ଚନ୍ଦନ ହଜୁରୀ ଆସି ପହଞ୍ଚିଲେ ନିଜର ଜନ୍ମଭୂମି ଶ୍ରୀକ୍ଷେତ୍ରରେ । ପୁରୀରେ ପହଞ୍ଚି ପ୍ରଥମେ ନିଜ ଘରକୁ ନ ଫେରି ଚନ୍ଦନ ହଜୁରୀ ଗଲେ ବନ୍ଧୁ ଦିବ୍ୟସିଂହ ମିଶ୍ରଙ୍କ ଘରକୁ । ମିଶ୍ରେ ହଜୁରୀ ମହାଶୟଙ୍କୁ ଦେଖି ଆଷ୍ଟର୍ଯ୍ୟାନ୍ୱିତ ହେଲେ । ଯାହା ହେଉ ବହୁତ ଆଦରକରି ନିଜ ଘରେ ରଖି ଘଟିଥିବା ସମସ୍ତ ଘଟଣା ପୁଙ୍ଖାନୁପୁଙ୍ଖ ଭାବେ ବର୍ଣ୍ଣନା କଲେ ହଜୁରୀ ମହାଶୟଙ୍କ ସମ୍ମୁଖରେ ।

ସେତେବେଳେ କାର୍ତ୍ତିକ ମାସ । ହଜୁରୀଙ୍କ ବିଧବା ପତ୍ନୀ କାର୍ତ୍ତିକ ବ୍ରତରେ ବ୍ୟସ୍ତ । ହଜୁରୀ ମହାଶୟ ଠିକ୍ କଲେ ଯେ, କାର୍ତ୍ତିକ ମାସରେ ଆଉ ନିଜଘରକୁ ଫେରିବା ଉଚିତ ହେବନାହିଁ; ତେଣୁ ଦିବ୍ୟସିଂହ ମିଶ୍ରଙ୍କ ଘରେ ପୁଣି ଏକମାସ ଆତ୍ମଗୋପନ କରିବାକୁ ପଡ଼ିଲା । ସାଧନାରେ ସେ ମଜ୍ଜିଗଲେ ଏବଂ ଶେଷରେ ଏହି ସାହିତ୍ୟ ସାଧନାହିଁ ତାହାଙ୍କୁ ଅମର କରିଛି । ବିପ୍ଳବୀ, ଦେଶପ୍ରେମୀ ହଜୁରୀଙ୍କୁ ବଳିଗଲା ସାହିତ୍ୟକ ଚନ୍ଦନ ହଜୁରୀ । ବିପ୍ଳବର ଅଗ୍ନିସ୍ରୋତ ପୁଷ୍ପିତ ହୋଇ ଉଠିଲା କାବ୍ୟ ଓ କବିତାର ଅପୂର୍ବରୂପ ଓ ରସରେ ।

ଓଡ଼ିଶା ଆଜି ଚନ୍ଦନ ହଜୁରୀଙ୍କୁ ଜାଣେ ଓଡ଼ିଆ ସାହିତ୍ୟର ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ରୂପେ, କିନ୍ତୁ ଏହି ବିରାଟ ବ୍ୟକ୍ତିତ୍ୱର ତାହା ମାତ୍ର ଗୋଟିଏ ଦିଗ । ଇତିହାସ ଦିନେ ନା ଦିନେ ପ୍ରକାଶ କରିବ ଅଗ୍ନିଯୁଗର ଏହି ମହାଗୁରୁଙ୍କୁ । ସେତେବେଳେ ଦେଶ ବୁଝିବ ଚନ୍ଦନ ହଜୁରୀଙ୍କ ବ୍ୟକ୍ତିତ୍ୱ କେଡ଼େ ବିରାଟ, କେଡ଼େ ମହାନ୍ । ■■■

ମିହିର ରାଓଙ୍କ ଅନ୍ୟାନ୍ୟ ରଚନା-

- ଏହି ଆବରଣ (ଅନୁବାଦ)
- ରକ୍ତଜବା (ଅନୁବାଦ)
- ଗୋଲ୍
- ଆଥେଲେଟିକ୍ସ ।

